[illegible] to post without Pre-payment



ଭୁବନେଶ୍ୱର କଳିଙ୍ଗ ଷ୍ଟାଡିୟମ୍‌ଠାରେ ଅନୁଷ୍ଠିତ ପଞ୍ଚାୟତିରାଜ ଦିବସ ସମାରୋହକୁ ମୁଖ୍ୟମନ୍ତ୍ରୀ
ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି ।





ନୟାଗଡ଼ କେନ୍ଦ୍ର ସମବାୟ ବ୍ୟାଙ୍କ୍ ପରିସର ମଧ୍ୟରେ "ମହିଳାମାନଙ୍କ ପାଇଁ ସମବାୟ ବ୍ୟାଙ୍କ୍"କୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି । ଉକ୍ତ ଉଦ୍‌ଘାଟନୀ ଉତ୍ସବରେ ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ ଶ୍ରୀ ଭାଗବତ ବେହେରା ଓ ରାଜସ୍ୱ ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ର ନାଥ ନାୟକ ଯୋଗଦାନ କରିଛନ୍ତି ।




ଭୁବନେଶ୍ୱରଠାରେ ରାଜ୍ୟ ମହିଳା କମିଶନ ଏବଂ ମହିଳା ବିକାଶ ସମବାୟ ନିଗମ ଆନୁକୂଲ୍ୟରେ ଆୟୋଜିତ ଏକ ରାଜ୍ୟସ୍ତରୀୟ ଆଲୋଚନା ଚକ୍ରକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି । ଉକ୍ତ ଆଲୋଚନା ଚକ୍ରରେ ପ୍ରଦର୍ଶନୀ କାର୍ଯ୍ୟକ୍ରମ ସହିତ ସମ୍ପୃକ୍ତ ଥିବା ମହିଳାମାନେ ଯୋଗଦାନ କରିଛନ୍ତି ।

# ଉତ୍କଳ ପ୍ରସଙ୍ଗ

୪୯ ଭାଗ ୧୦ମ ସଂଖ୍ୟା ବୈଶାଖ ୧୯୧୪ ଶକାବ୍ଦ ମେ ୧୯୯୨





ପ୍ରକାଶନ

ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା ସରକାର
ଭୁବନେଶ୍ୱର

ମୁଦ୍ରଣ

ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦
(ଫଟୋଟାଇପ୍‌ସେଟିଂ ପଦ୍ଧତିରେ ଅକ୍ଷର ସଂଯୋଜିତ)

ବାର୍ଷିକ ଦେୟ : ଟ ୨୦.୦୦

ପ୍ରତି ଖଣ୍ଡ : ଟ ୨.୦୦

# ସୂଚୀ

# ସଂପାଦକୀୟ

## ଓଡ଼ିଆ ଭାଷାର ନିର୍ମାତା

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଓଡ଼ିଆ ଭାଷା ସାହିତ୍ୟର ଏକ ଅବିସ୍ମରଣୀୟ ପ୍ରତିଭା । ବିଭିନ୍ନ ଉପମା ଓ ଅଳଙ୍କାର ପ୍ରୟୋଗ କରି କାବ୍ୟଗୁଡ଼ିକୁ ଅଧିକ ରସାଳ ଏବଂ ରୁଚିପୂର୍ଣ୍ଣ କରିବାରେ ସେ ଥିଲେ ସିଦ୍ଧହସ୍ତ । ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟକୃତୀ ଓଡ଼ିଆ ଭାଷା-ସାହିତ୍ୟକୁ ସମୃଦ୍ଧ ତଥା ଗୌରବ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଓଡ଼ିଆ ଭାଷାକୁ ଏକ ନୂଆ ରୂପ ଦେଇପାରିଛି ।

ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଦାବୀ ଉପସ୍ଥାପନ ହେଲାବେଳେ "ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ" ବୋଲି କେତେକ ଅଣ-ଓଡ଼ିଆ ବୁଦ୍ଧ ବିରୋଧୀ ସ୍ୱର ଉତ୍ତୋଳନ କରିଥିଲେ । ଏଭଳି ଏକ ସଙ୍କଟଜନକ ମୁହୂର୍ତ୍ତରେ ଉପେନ୍ଦ୍ର ଭଞ୍ଜ ରଚିତ କାବ୍ୟ "ପ୍ରେମ ସୁଧାନିଧି"କୁ ମୁଖ୍ୟ ଆୟୁଧ ରୂପେ ଉପସ୍ଥାପନ କରାଯାଇଥିଲା । ରସପୂର୍ଣ୍ଣ ଅଳଙ୍କାର ମଣ୍ଡିତ ଷୋଳ ଅକ୍ଷରୀ ଛାନ୍ଦ ବିଶିଷ୍ଟ ଏହି କାବ୍ୟର ଷୋଳକଳା ବର୍ଣ୍ଣନା, ଶବ୍ଦ ସଂଯୋଜନା ତଥା ପରିବେଷଣ ଶୈଳୀ ଦେଖିବା ପରେ ସମସ୍ତେ ସ୍ୱୀକାର କରିଥିଲେ ଯେ, ଓଡ଼ିଆ ଭାଷା ଏକ ପ୍ରାଚୀନ ଏବଂ ସମୃଦ୍ଧ ଭାଷା । ଫଳତଃ ଭାଷା ଭିତ୍ତିରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦାବୀର ଯଥାର୍ଥତା ପ୍ରମାଣିତ ହେଲା ଏବଂ ୧୯୩୬ ମସିହା ଅପ୍ରେଲ ପହିଲା ତାରିଖରେ ସେଥିର ସୁଫଳ ମିଳିଲା । ସୁତରାଂ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ନିର୍ମାତା ଭାବେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ଯେ ଗୌରବର ଅଧିକାରୀ କରିବା ଭଳି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କୁ ମଧ୍ୟ ଓଡ଼ିଆ ଭାଷାର ନିର୍ମାତା କହିବା କଦାପି ଅତିରଞ୍ଜିତ ହେବ ନାହିଁ ।

ଭାରତର ଶ୍ରେଷ୍ଠ ତଥା ପ୍ରାଚୀନ ଭାଷା "ସଂସ୍କୃତ" ସହିତ ପ୍ରତିଦ୍ୱନ୍ଦ୍ୱିତା ମନୋଭାବ ପୋଷଣ କରି କବି ଉପେନ୍ଦ୍ର ଭଞ୍ଜ ବିଭିନ୍ନ ଅଳଙ୍କାରରେ ତାଙ୍କ କାବ୍ୟଗୁଡ଼ିକୁ ବିଭୂଷିତ କରିଛନ୍ତି ଯାହାକି ଅନ୍ୟ କୌଣସି ପ୍ରାଦେଶିକ ଭାଷାରେ ଏଭଳି ଛନ୍ଦପୂର୍ଣ୍ଣ ବର୍ଣ୍ଣନା ଦେଖିବାକୁ ମିଳେ ନାହିଁ । ଉଲ୍ଲେଖଯୋଗ୍ୟ ଯେ, ଲୋମ-ବିଲୋମ ପାଦରେ ରଚନା କରିବା ଏକ ବିଚକ୍ଷଣ କୃତୀ ଯାହାକି, କବିମାନେ ସାହିତ୍ୟର ଉତ୍କର୍ଷତା ଲାଭ କରିବା ପରେ ହିଁ ରଚନା କରିବାକୁ ସମର୍ଥ ହୋଇଥାନ୍ତି । ଏଭଳି ରଚନା ସଂସ୍କୃତ ଭାଷା ବ୍ୟତୀତ ଅନ୍ୟ କୌଣସି ଭାଷାରେ ଅଦ୍ୟାବଧି ସମ୍ଭବ ହୋଇପାରିନାହିଁ । ଅତ୍ୟନ୍ତ ଆଶ୍ଚର୍ଯ୍ୟ ଏବଂ ଗୌରବର ବିଷୟ, ତୁଳସୀ ଦୁଇ ପତ୍ରରୁ ବାସିଲା ଭଳି କବି ଉପେନ୍ଦ୍ର ଭଞ୍ଜଙ୍କ ମନରେ ବାଲ୍ୟାବସ୍ଥାରୁ ହିଁ ଏଭଳି ଅଭିନବ ପରିକଳ୍ପନା ସ୍ଥାନ ପାଇଥିଲା । କବିଙ୍କ ମାତାମହ ତଥା ନୟାଗଡ଼ ରାଜା ଦୟାନିଧି ମାନଧାତାଙ୍କ ନିକଟରେ ଭଞ୍ଜ ଗାଇଥିଲେ-"ନାଚ ଲୋ ଜଳଜ ଲୋଚନା" । ପ୍ରଥମରୁ ଶେଷକୁ ପଢ଼ିଲେ ଯାହା ହେବ, ଶେଷରୁ ପ୍ରଥମକୁ ପଢ଼ିଲେ ମଧ୍ୟ ତାହା ହିଁ ହେବ । ବାଲ୍ୟ କାଳରେ ଏଭଳି ବିଚକ୍ଷଣତା ପ୍ରଦର୍ଶନ କରିଥିବା ଉପେନ୍ଦ୍ର ଭଞ୍ଜ ପରବର୍ତ୍ତୀ କାଳରେ "ପ୍ରେମ ସୁଧାନିଧି" କାବ୍ୟର ପଞ୍ଚଦଶ ଛାନ୍ଦଟି ସମ୍ପୂର୍ଣ୍ଣଭାବେ ଲୋମ-ବିଲୋମ ପାଦରେ ରଚନା କରି ବିଶ୍ୱରେ ବିସ୍ମୟ ସୃଷ୍ଟି କରି ପାରିଛନ୍ତି ।

ଉଲ୍ଲେଖଯୋଗ୍ୟ ଯେ, ଜୀବିତାବସ୍ଥାରେ ଉପେନ୍ଦ୍ର ଭଞ୍ଜ କାହାକୁ ଶିଷ୍ୟ ରୂପେ ଗ୍ରହଣ କରି ନଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ଜନ୍ମ ନେଇଥିବା କବିମାନେ ଉପେନ୍ଦ୍ର ଭଞ୍ଜଙ୍କୁ ଗୁରୁ ରୂପେ ଗ୍ରହଣ କରି ଭଞ୍ଜଙ୍କ ରଚନା ଶୈଳୀକୁ ଅନୁକରଣ କରିବାରେ ଗର୍ବ ଅନୁଭବ କରିଛନ୍ତି । ପଣ୍ଡିତମାନେ ମଧ୍ୟ ଭଞ୍ଜଙ୍କ ରଚନାକୁ ଅଗ୍ରାଧିକାର ଦେଇ ଆଦରି ନେଇଛନ୍ତି । ବାସ୍ତବରେ ଭଞ୍ଜଙ୍କ ରଚନା ସବୁ ଶ୍ରେଣୀର ଲୋକଙ୍କୁ ଆକୃଷ୍ଟ କରିପାରିଛି । ସେଥିପାଇଁ ଗୋପବନ୍ଧୁ ଯଥାର୍ଥରେ କହିଥିଲେ-

ଗାଏ ତୁମ ଗୀତ ସଭାରେ ପଣ୍ଡିତ
ପଥେ ପାନ୍ଥ ଚୁନ୍ନମନା
ବିଲେ ବୋଲେ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟ ରଙ୍ଗେ ବାରାଙ୍ଗନା

ସୁତରାଂ, ବହୁମୁଖୀ ପ୍ରତିଭାର ଅଧିକାରୀ ଉପେନ୍ଦ୍ର ଭଞ୍ଜ କେବଳ କବି ନଥିଲେ । ସେ ଥିଲେ କବି କୁଳର ଗୁରୁ, କବି ସମ୍ରାଟ ଓ ସଙ୍ଗୀତ ସମ୍ରାଟ । କିନ୍ତୁ ଅତୀବ ଦୁଃଖର କଥା, ଓଡ଼ିଆ ଭାଷାର ନିର୍ମାତା କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଗ୍ରନ୍ଥାବଳୀକୁ "କାବ୍ୟର ଖୋରାକ" ବୋଲି ଆମେ ଗର୍ବ କରୁଥିଲେ ମଧ୍ୟ ଭଞ୍ଜଙ୍କ ଗ୍ରନ୍ଥାବଳୀକୁ ଅନ୍ୟ ଭାଷାରେ ଅନୁବାଦ କରି ଭଞ୍ଜଙ୍କ ବାର୍ତ୍ତା ତଥା ପରିବେଷଣ ଶୈଳୀକୁ ଦେଶ ବିଦେଶରେ ପ୍ରଚାର କରିବା ଦିଗରେ କୌଣସି ପଦକ୍ଷେପ ନିଆଯାଇ ପାରିନାହିଁ ।

ଖୁସିର କଥା, ସେହି ଭଞ୍ଜ ଭୂମିର ଆଉ ଜଣେ ଯୁଗଜନ୍ମା କୃତୀ ସନ୍ତାନ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଭାବେ ଦାୟିତ୍ୱ ନେବା ପରେ ଏଥିର ଦ୍ୱାର ଉନ୍ମୁକ୍ତ କରି ପଥକୁ ସୁଗମ କରିଛନ୍ତି । ଓଡ଼ିଆ ଭାଷାକୁ ସମୃଦ୍ଧ ଭାଷା ରୂପେ ଗଢ଼ି ତୋଳିବାକୁ ଉପେନ୍ଦ୍ର ଭଞ୍ଜ ଯେଉଁଭଳି ନିଜ ଜୀବନର ବ୍ରତ ରୂପେ ଗ୍ରହଣ କରି ସାଧନା କରିଥିଲେ, ଠିକ୍ ସେହିଭଳି ଓଡ଼ିଆ ଜାତିର ଇତିହାସ ତଥା ଅତୀତର ଗୌରବମୟ ସଂସ୍କୃତି ଓ ପରମ୍ପରା ପାଇଁ ଗର୍ବ କରୁଥିବା ଆମ ମୁଖ୍ୟମନ୍ତ୍ରୀ ସେ ସବୁ ଲୁପ୍ତ ଗୌରବକୁ ଫେରାଇ ଆଣିବା ପାଇଁ ଏକନିଷ୍ଠ ଉଦ୍ୟମ ଅବ୍ୟାହତ ରଖିଛନ୍ତି । ବିଜୁ ବାବୁଙ୍କ ଏହି ସାଧୁ ଉଦ୍ୟମ ଓଡ଼ିଆ ଜାତି ପାଇଁ ତଥା ଓଡ଼ିଶା ପାଇଁ ଏକ ଶୁଭ ସୂଚନା ।

ବୀର ପାଇକ ସଂସ୍କୃତିର ପୁନରୁଦ୍ଧାର ପାଇଁ ରାଜ୍ୟସ୍ତରୀୟ ପାଇକ ଆଖଡ଼ା ସମାରୋହ ଅନୁଷ୍ଠିତ କରାଇବା ସାଙ୍ଗକୁ ପାଇକ ଏକାଡେମୀ ବା ବେସାମରିକ ଶାରୀରିକ ଶିକ୍ଷା ଏକାଡେମୀ ପ୍ରତିଷ୍ଠା କରିବା ପାଇଁ ବିଜୁ ବାବୁ ନିଷ୍ପତ୍ତି ନେଇଛନ୍ତି । ଗୌରବମୟ ବୋଇତ ବାଣିଜ୍ୟ ପରମ୍ପରାର ପୁନରୁଜ୍ଜୀବନ କରି ଗତ କାର୍ତ୍ତିକ ପୂର୍ଣ୍ଣିମା ତିଥିରେ ପାରାଦ୍ୱୀପ ବନ୍ଦରରୁ ବାଲିଦ୍ୱୀପ ଅଭିମୁଖେ ବୋଇତ ଯାତ୍ରାର ଶୁଭାରମ୍ଭ କରି ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଏକ ଦୁଃସାହସିକ ପଦକ୍ଷେପ ନେଇଛନ୍ତି । ଓଡ଼ିଆ ଭାଷା-ସାହିତ୍ୟକୁ ଅନ୍ତର୍ଜାତୀୟ ସ୍ତରରେ ପରିଚିତ କରାଇବା ପାଇଁ ଗତ ବର୍ଷ ଦିଲ୍ଲୀଠାରେ "ଓଡ଼ିଆ ସାହିତ୍ୟ ସଂସ୍କୃତି ସମାରୋହ" ଅନୁଷ୍ଠିତ କରାଇ ଏକ ଅଭିନବ ପରିକଳ୍ପନାକୁ ସାର୍ଥକ କରିଛନ୍ତି । ଓଡ଼ିଆ ଜାତିର ସଂସ୍କୃତି ଓ ପରମ୍ପରାର ପୁନରୁଦ୍ଧାର ନିମନ୍ତେ ଏଭଳି ପଦକ୍ଷେପ ନେବା ସାଙ୍ଗକୁ ଉପେନ୍ଦ୍ର ଭଞ୍ଜଙ୍କ ବାର୍ତ୍ତାକୁ ଦେଶ ବିଦେଶରେ ପହଞ୍ଚାଇବା ପାଇଁ ଭଞ୍ଜ ଗ୍ରନ୍ଥାବଳୀକୁ ଇଂରାଜୀରେ ଅନୁବାଦ କରିବା କାର୍ଯ୍ୟକ୍ରମର ଶୁଭାରମ୍ଭ କରିଛନ୍ତି ।

ବିଜୁ ବାବୁଙ୍କ ଏହି ପ୍ରଶଂସନୀୟ ଉଦ୍ୟମ ଫଳବତୀ ହେଉ ଏବଂ ଓଡ଼ିଆ ଭାଷାର ମହତ୍ୱ ଦେଶ ବିଦେଶରେ ମହକି ଉଠୁ । ଓଡ଼ିଆ ଭାଷାର ନିର୍ମାତା କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଏ ପଥରେ ସ୍ୱର୍ଗପୁରରୁ ଆଶୀର୍ବାଦର ପୁଷ୍ପରାଶି ବୃଷ୍ଟି କରନ୍ତୁ । କବି ସମ୍ରାଟଙ୍କ ସ୍ମୃତିରେ ଏହି ଅଳି ସହ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ ।

# ଗତ ତିନି ବର୍ଷ ମଧ୍ୟରେ
# ବାଣିଜ୍ୟ ଓ ପରିବହନ ବିଭାଗର ସାଫଲ୍ୟ

* ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର

୧୬-୮-୧୯୯୦ରୁ ଓଡ଼ିଶା ରାଜ୍ୟ ସଡ଼କ ପରିବହନ ନିଗମ ଓଡ଼ିଶା ସଡ଼କ ପରିବହନ କମ୍ପାନୀ ଲିଃର ଦାୟିତ୍ୱ ହାତକୁ ନେଇଛି । ଏହାକୁ ୧୯୯୦-୯୧, ୧୯୯୧-୯୨ ଏବଂ ୧୯୯୨-୯୩ରେ ଯଥାକ୍ରମେ ୪୬୪ ଲକ୍ଷ, ୬୯୩ ଲକ୍ଷ ଏବଂ ୨୬୩ ଲକ୍ଷ ଟଙ୍କାର ଅଂଶଧନ ପ୍ରଦାନ କରାଯାଇଛି ।

ଓଡ଼ିଶାର ସ୍ଥାୟୀ ବାସିନ୍ଦା ତଥା କେନ୍ଦ୍ର ଓ ରାଜ୍ୟ ସରକାରଙ୍କଠାରୁ ପେନ୍‌ସନ୍ ପାଉଥିବା ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ନିର୍ଦ୍ଦିଷ୍ଟତଃ ଉଭୟ ଉଦ୍ୟୋଗଠାରୁ ୩୦-୬-୧୯୯୦ ଯାଏଁ ବିନା ମୂଲ୍ୟରେ ଭ୍ରମଣ ସୁବିଧା ପାଇଥିବା ବ୍ୟକ୍ତିଙ୍କୁ ୧-୭-୧୯୯୦ରୁ ତିନିବର୍ଷ ଯାଏଁ ସମାନ ସୁବିଧା ପ୍ରଦାନ କରାଯାଇଛି ।

ରାଜ୍ୟ ରାଜକୋଷ ପାଇଁ ମୋଟର ଗାଡ଼ି ଟିକସ ଆୟର ଅନ୍ୟତମ ପ୍ରଧାନ ଉତ୍ସ । ମଟର ଗାଡ଼ି ରାଜସ୍ୱ ଆଦାୟ ବୃଦ୍ଧି କରିବା ପାଇଁ ଦି'ଚକିଆ, ତିନି ଚକିଆ ଏବଂ ବିକଳାଙ୍ଗଙ୍କ ଯାତାୟତରେ ବ୍ୟବହୃତ ଗାଡ଼ିଗୁଡ଼ିକରୁ ଆଦାୟ କରାଯାଉଥିବା ଟିକସର ପରିମାଣ ୫୦ ଶତାଂଶ ବୃଦ୍ଧି କରାଯାଇଛି । ରାଜ୍ୟରେ ଚାଲୁଥିବା ସମସ୍ତ ପ୍ରକାର ପରିବହନର ଭଡ଼ାବୃଦ୍ଧି କରାଯାଇଛି ଏବଂ ୧-୧୧-୧୯୯୦ରୁ ଟାଉନ ବସ୍‌ର ଭଡ଼ା ପରିମାଣ ବୃଦ୍ଧି କରାଯାଇଛି । ସେହିପରିଭାବେ ବ୍ୟକ୍ତିଗତ ବ୍ୟବହାରରେ ଲାଗୁଥିବା ଚାରିଚକିଆ ଗାଡ଼ିରୁ ଏକକାଳୀନ ଟିକସ ୧-୧୨-୧୯୯୦ରୁ ଆଦାୟ କରିବାର ବ୍ୟବସ୍ଥା ପ୍ରବର୍ତ୍ତିତ ହୋଇଛି ।

ସମ୍ପୂର୍ଣ୍ଣ ଅନ୍ଧ ଅଥବା ହାଡ଼ ଭାଙ୍ଗିଥିବାରୁ ବିକଳାଙ୍ଗ ହୋଇଥିବା ବ୍ୟକ୍ତିମାନେ ୫୦ ଶତାଂଶ ବା ତତୋଧିକ ରିହାତି ପାଉଥିଲେ । ସମ୍ପ୍ରତି ସେମାନେ ସମ୍ପୂର୍ଣ୍ଣଭାବେ ଭଡ଼ା ନ ଦେଇ ଯିବା ଆସିବାର ସୁଯୋଗ ପାଇଛନ୍ତି । ସେମାନଙ୍କୁ ନେବା ଆଣିବା କରୁଥିବା ଲୋକଙ୍କୁ ପରିବହନ ୫୦ ଶତାଂଶ ରିହାତିରେ ଟିକଟ୍ ଦେବ । ପରିବହନ ହାଡ଼ଭାଙ୍ଗି ୪୦ ରୁ ୫୦ ବିକଳାଙ୍ଗ ହୋଇଥିବା ଲୋକଙ୍କୁ (ସହାୟକାରୀଙ୍କ ବ୍ୟତୀତ) ୫୦ ଶତାଂଶ ରିହାତିରେ ଟିକେଟ୍ ଦେବ । ୧୦-୭-୧୯୯୨ରୁ ଏଇ ଯୋଜନା ଲାଗୁ କରାଯାଇଛି ।

ରାଜ୍ୟର ଟ୍ୟାକ୍ସି ଭଡ଼ା ୧-୧-୧୯୯୨ରୁ ସଂଶୋଧିତ ହୋଇଛି । କଟକ-ଭୁବନେଶ୍ୱର ଏବଂ ପୁରୀ-ଭୁବନେଶ୍ୱର-କୋଣାର୍କର ପ୍ରସିଦ୍ଧ ସ୍ୱର୍ଣ୍ଣ ତ୍ରିଭୁଜ ସଂଲଗ୍ନ ସହରଗୁଡ଼ିକ ପାଇଁ ଟ୍ୟାକସି ଭଡ଼ା ଧାର୍ଯ୍ୟ ହୋଇଛି । ସବୁ ବର୍ଗର ପରିବହନ ସେବା ପାଇଁ ରହିଥିବା ଭଡ଼ାକୁ ପ୍ରାୟତଃ କିଲୋମିଟର ପ୍ରତି ତିନିପଇସା କରି ୧-୧୧-୧୯୯୨ ରୁ ବଢ଼ାଇ ଦିଆଯାଇଛି । ବିଭିନ୍ନ ସ୍ଥାନକୁ ଯାତାୟତ କରୁଥିବା ଟାଉନ ବସ୍‌ଗୁଡ଼ିକର ଭଡ଼ା କିଲୋମିଟର ହିସାବ କରାଯାଇ ୧-୧୧-୧୯୯୨ ରୁ ୨୩ ଶତାଂଶ ବଢ଼ାଇ ଦିଆଯାଇଛି ।

ଓଡ଼ିଶା ମଧ୍ୟରେ ଓ ବାହାରେ ଯାତାୟତ କରୁଥିବା ମାଲବାହୀ ଗାଡ଼ିଗୁଡ଼ିକ ପାଇଁ ଭଡ଼ା ଧାର୍ଯ୍ୟ କରାଯାଇଛି । ୨୩-୬-୧୯୯୨ରୁ ଲାଗୁ ହୋଇଥିବା ଏହି ଭଡ଼ା ରାଜ୍ୟର ଟ୍ରକ୍ ମାଲିକମାନଙ୍କ ଦୀର୍ଘ ଦିନର ଦାବୀ ପୂରଣ କରିଛି ।

ଅଷ୍ଟମ ଯୋଜନା କାଳରେ ଅତିରିକ୍ତ ସମ୍ବଳ ସଂଗ୍ରହ ପାଇଁ ୧-୪-୧୯୯୨ରୁ ଅନ୍ୟ ରାଜ୍ୟଗୁଡ଼ିକରୁ ଆସୁଥିବା ମାଲବାହୀ ଗାଡ଼ିଗୁଡ଼ିକରୁ ଆମରାଜ୍ୟ ସୀମାନ୍ତରେ ଥିବା ପ୍ରବେଶ ଫାଟକରେ ଶୁଳ୍କ ଆଦାୟ କରାଯାଉଛି ।

## ରେଳ ଦ୍ୱାରା ପରିବହନ :

୧୯୭୯-୮୦ରେ ପରିବହନ ବିଭାଗ ଅଧୀନରେ ଗଠିତ ରେଳ୍ ସମନ୍ୱୟ ନିର୍ଦ୍ଦେଶାଳୟ ରାଜ୍ୟରେ ରେଳ୍ ଦ୍ୱାରା ପରିବହନ ସୁବିଧାର ମୂଲ୍ୟବାନ ସେବାରେ ନିଜକୁ ନିୟୋଜିତ କରିଛି । ନିର୍ଦ୍ଦେଶାଳୟ ରାଜ୍ୟରେ ରେଳ୍ ଉନ୍ନୟନ ଯୋଜନା ପ୍ରସ୍ତୁତ କରିଛନ୍ତି । ରେଲ୍‌ୱେ ପ୍ରଶାସନ ଭାରତ ସରକାରଙ୍କ ସହାୟତାରେ ଯୋଜନାଗୁଡ଼ିକ ରୂପାୟିତ କରିବାପାଇଁ ଉଦ୍ୟମ କରିଛନ୍ତି । ସେଥି ମଧ୍ୟରୁ ନିର୍ଦ୍ଦିଷ୍ଟଭାବେ ଏଗୁଡ଼ିକୁ ଉଲ୍ଲେଖ କରାଯାଇପାରେ :

## ତାଳଚେର-ସମ୍ବଲପୁର ରେଳ ଯୋଗାଯୋଗ :

୧୭୪ କି.ମି. ଦୈର୍ଘ୍ୟର ରେଳ ଲାଇନ୍ ତାଳଚେର-ସମ୍ବଲପୁରକୁ ସଂଯୁକ୍ତ କରିବ । ଏହାର ନିର୍ମାଣ କାର୍ଯ୍ୟ ଏବେ ଆଗେଇ ଚାଲିଛି । ୧୯୯୪-୯୫ରେ ଏଇ ପ୍ରକଳ୍ପ ସମ୍ପୂର୍ଣ୍ଣ କରେଇବା ପାଇଁ ଆପାତତଃ ଲକ୍ଷ୍ୟ ଧାର୍ଯ୍ୟ ହୋଇଛି । ୧/୭/୧୯୯୨ରୁ ତାଳଚେର ଅନୁଗୁଳ ମଧ୍ୟରେ ଯୋଗାଯୋଗ ବ୍ୟବସ୍ଥା କାର୍ଯ୍ୟକାରୀ ହୋଇଛି ।

## କୋରାପୁଟ-ରାୟଗଡ଼ା ରେଲ୍ ସଂଯୋଗ :

କୋରାପୁଟ-ରାୟଗଡ଼ା ମଧ୍ୟରେ ନୂଆ ବ୍ରୋଡ୍‌ଗଜ୍ ରେଲ୍ ଲାଇନ୍ ୧୬୫ କି. ମି. ଦୈର୍ଘ୍ୟ ରାସ୍ତା ସଂଯୋଜିତ କରୁଛି । ଏହି

ସଂଯୋଗ କୋରାପୁଟଠାରୁ ଦାମନଯୋଡ଼ି ମଧ୍ୟରେ ୧୯.୬ ୨୮/୧୨/୧୯୯୫ରୁ ଯାତାୟତ ନିମନ୍ତେ ଉନ୍ମୁକ୍ତ ହୋଇଛି । କି: ମି: ଦୈର୍ଘ୍ୟ ଏଇ ରାସ୍ତାର ବିଦ୍ୟୁତକରଣ ୪/୨/୧୯୯୯ରୁ ଆରମ୍ଭ ହୋଇଛି । ଦାମନଯୋଡ଼ି ଆଗକୁ ନିର୍ମାଣ କାର୍ଯ୍ୟ ଏବେ ଆରେଇ ଗ୍ଲାଳିଛି । ପ୍ରାୟ ୯୦ ଶତାଂଶ ଅଗ୍ରଗତି ପରିଲକ୍ଷିତ ହୋଇଛି । ୧୯୯୩-୯୪ରେ ଏଇ ପ୍ରକଳ୍ପ ସମ୍ପୂର୍ଣ୍ଣ କରିବାପାଇଁ ମୂଳରୁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା ।

## ରୁପ୍‌ସା-ବାଙ୍ଗିରୀପୋଷି ନେରୋଗଜ୍ ରେଲ୍ ସଂଯୋଗ :

ରେଳବାଇ ଚଳିତ ରୂପାୟନ ଯୋଜନାରେ ରୁପ୍‌ସା-ବାଙ୍ଗିରୀପୋଷି ନେରୋଗଜ୍ ରେଲ୍ ସଂଯୋଗକୁ ଅନ୍ତର୍ଭୁକ୍ତ କରିଛନ୍ତି । ଏହି ପଥର ଦୈର୍ଘ୍ୟ ୮୯ କି: ମି: ।

## ନୂଆପଡ଼ା-ଗୁଣୁପୁର ନେରୋଗଜ୍ ରେଳ ସଂଯୋଗ :

ଭାରତ ସରକାରଙ୍କ ରେଳ ମନ୍ତ୍ରଣାଳୟ ଏଇ ରେଳ ଲାଇନ୍‌କୁ ବ୍ରୋଡ୍ ଗଜ୍‌ରେ ରୂପାନ୍ତରିତ କରିବା ପାଇଁ ରାଜ୍ୟ ସରକାରଙ୍କ ଅନୁରୋଧ ସମ୍ପର୍କରେ ଅବହିତ ଅଛନ୍ତି । ମଇ ୧୯୯୨ରୁ ରେଳବାଇ ଏଇ ଲାଇନ୍‌ରେ ଡିଜେଲ୍ ଇଞ୍ଜିନ୍ ଚଳାଉଛନ୍ତି ।

## ଯଖପୁରା-ବାଂଶପାଣି ରେଳ ସଂଯୋଗ :

ଆଗରୁ ଯଖପୁରା-ଦୈତାରୀ ରେଳପଥ (୩୩ କି: ମି:) ସଂଯୋଜିତ ହୋଇଛି । ୧୬୯ କି: ମି: ଦୈର୍ଘ୍ୟ ଯଖପୁରା-ବାଂଶପାଣି ରେଳ ସଂଯୋଗର ଅଂଶ ବିଶେଷ ଏହି ପଥରେ ଗାଡ଼ି ଯାତାୟତ ଆରମ୍ଭ ହୋଇଛି । ଯୋଜନା କମିଶନ୍ ଦୈତାରୀ-ବାଂଶପାଣି (୧୫୬ କି: ମି: ଦୈର୍ଘ୍ୟ) ସଂଯୋଗର ଅବଶିଷ୍ଟ ଅଂଶରେ ରେଳ ଲାଇନ୍ ନିର୍ମାଣପାଇଁ ଚଳିତ ଆର୍ଥିକ ବର୍ଷରେ ନୂଆ କରି ୧୦ କୋଟି ଟଙ୍କା ମଞ୍ଜୁର କରିଛନ୍ତି । ରାଜ୍ୟ ସରକାର ଏହି ଉଦ୍ଦେଶ୍ୟରେ ବିନା ମୂଲ୍ୟରେ ଜମି ଦେବାପାଇଁ ପ୍ରତିଶ୍ରୁତିବଦ୍ଧ ହୋଇଛନ୍ତି । କେଉଁଝର ଏବଂ ବାଂଶପାଣି ମଧ୍ୟରେ ଜମିଗୁଡ଼ିକ ଚିହ୍ନଟ କରାଯାଉଛି ।

## ଲାଞ୍ଜିଗଡ଼-ଜୁନାଗଡ଼ ରେଳ ସଂଯୋଗ (୫୪ କି: ମି:) :

ପୂର୍ବରୁ ଯୋଜନା କମିଶନ, ଭାରତ ସରକାରଙ୍କ ଶିଳ୍ପ ମନ୍ତ୍ରଣାଳୟ, ରାଜ୍ୟ ଶିଳ୍ପ ବିଭାଗ ଦ୍ୱାରା ଏଇ ରେଳ ସଂଯୋଗ ଯୋଜନା ଅନୁମୋଦିତ ହୋଇଥିଲା । ବାସ୍ତବରେ ରାଜ୍ୟ ଶିଳ୍ପ ବିଭାଗ କଳାହାଣ୍ଡି ଜିଲ୍ଲାରେ ଏକ ଆଲୁମିନା କାରଖାନା ପ୍ରତିଷ୍ଠା ପାଇଁ ମେସର୍ସ ଲାରସନ୍ ଓ ଟୁବ୍ରୋ ଲିଃକୁ ଆଗୁଆ ନିର୍ମାଣ ଦାୟିତ୍ୱ ସମ୍ବଳିତ ପତ୍ର ଲେଖିଛନ୍ତି । ରେଳ ସଂଯୋଗ ପ୍ରକଳ୍ପ ଏ ଯାଏଁ ରେଳବାଇ ମନ୍ତ୍ରଣାଳୟର ମଞ୍ଜୁରି ପାଇନାହିଁ ।

## ତାଳଚେର-ଗୋପାଳପୁର ନୂତନ ରେଳ ସଂଯୋଗ (ପ୍ରସ୍ତାବିତ) :

ରେଳବାଇ ମନ୍ତ୍ରଣାଳୟର ନିର୍ଦ୍ଦେଶ ଅନୁଯାୟୀ ୧୯୯୩-୯୪ ବଜେଟ୍‌ରେ ୫୬ ଲକ୍ଷ ଟଙ୍କାର ଅଟକଳ କରାଯାଇ ୩୨୭ କି: ମି: ଦୈର୍ଘ୍ୟ ତାଳଚେର-ଗୋପାଳପୁର ନୂତନ ରେଳ ସଂଯୋଗର ଯାନ୍ତ୍ରିକ-ସ୍ଥାନୀକରଣ ଓ ପରିବହନ ସର୍ବେକ୍ଷଣ ସମ୍ପର୍କୀତ କାର୍ଯ୍ୟ ରାଜ୍ୟ ସରକାର ହାତକୁ ନେବାପାଇଁ ନିଷ୍ପତ୍ତି କରିଛନ୍ତି ।

## ବେସାମରିକ ବିମାନ ଚଳାଚଳ :

ରାଜ୍ୟ ସରକାର ଦୁଇଟି ଭି: ଆଇ: ପି: ବିମାନ ରଖିଛନ୍ତି । ଗୋଟିଏ ସୁପର କିଙ୍ଗ୍ ଏଆର ବି-୨୦୦ ଏବଂ ଅନ୍ୟଟି ରେଉନ୍ ୫୮ । ମାନ୍ୟଗଣ୍ୟ ଲୋକଙ୍କୁ ନେବା ଆଣିବାରେ ଏ ସବୁ ବ୍ୟବହୃତ ହୁଏ । ଉଚ୍ଚ ପଦାଧିକାରୀଙ୍କ ପାଇଁ ଏବଂ ବନ୍ୟା ବାତ୍ୟା ଓ ମରୁଡ଼ି ପରିସ୍ଥିତିରେ ରାଜ୍ୟ କବଳିତ ହେଲେ ତ୍ରାଣ ସହାୟତା କାର୍ଯ୍ୟପାଇଁ ବିମାନ ଦୁଇଟି ବ୍ୟବହୃତ ହୁଏ ।

ଭୁବନେଶ୍ୱର ବିମାନ ବନ୍ଦରର ସମ୍ପ୍ରସାରଣ ଓ ଆଧୁନିକୀକରଣ ପାଇଁ ରାଜ୍ୟ ସରକାର ୧୧/୧୧/୧୯୯୨ରେ ଔପଚାରିକଭାବେ ବେସାମରିକ ବିମାନ ଚଳାଚଳ ମନ୍ତ୍ରଣାଳୟକୁ ୬୮.୩୧୯ ଏକର ସରକାରୀ ଜମି ଦେଇଛନ୍ତି । ଯଥେଷ୍ଟ ଅନୁକୂଳ ଭୌଗୋଳିକ ଅବସ୍ଥିତି, ଉଚ୍ଚ ସମୃଦ୍ଧ ପର୍ଯ୍ୟଟନ କେନ୍ଦ୍ର ସ୍ଥଳୀ ଏବଂ ବିକାଶଶୀଳ ଶିଳ୍ପର ଗୁରୁତ୍ୱକୁ ବିଚାର କରି ରାଜ୍ୟ ସରକାର ବେସାମରିକ ବିମାନ ଚଳାଚଳ ମନ୍ତ୍ରଣାଳୟ ନିକଟରେ ଭୁବନେଶ୍ୱର ବିମାନ ବନ୍ଦରର ଆଧୁନିକୀକରଣ ଓ ସମ୍ପ୍ରସାରଣ ପାଇଁ କ୍ରମାଗତଭାବେ ଦାବୀ ଉପସ୍ଥାପିତ କରୁଛନ୍ତି । ପରିଭ୍ରମଣର ବିକାଶଶୀଳ ଶକ୍ତିର ସୁରକ୍ଷା ଏବଂ ପର୍ଯ୍ୟଟନର ଉନ୍ନୟନ ପାଇଁ ପ୍ରଶସ୍ତତର ବିମାନ ସ୍ୱଦେଶୀ ଓ ବିଦେଶୀ ପର୍ଯ୍ୟଟନମାନଙ୍କୁ ଧରି ବିମାନ ବନ୍ଦରରେ ଅବତରଣ କରିବା ଉଦ୍ଦେଶ୍ୟରେ ଏହା କରାଯାଉଛି ।

ରାଜ୍ୟରେ ବିମାନ ଅବତରଣ କରିବା ପାଇଁ ୧୭ଟି ବିମାନ ଧାବନପଥ ଓ ୧୬ଟି ହେଲିପ୍ୟାଡ୍ ଅଛି । ଏତଦ୍ ବ୍ୟତୀତ ବାଲେଶ୍ୱର ଓ ଢେଙ୍କାନାଳ ଜିଲ୍ଲାରେ ଦୁଇଟି ନୂଆ ବିମାନ ଧାବନପଥ ନିର୍ମାଣାଧୀନ ଅଛି । ନିକଟରେ ମାଲକାନଗିରି, ପାରାଦ୍ୱୀପ ଓ ତୁତୁରିରେ ତିନୋଟି ବିମାନ ଧାବନପଥ ନିର୍ମିତ ହେବାର ପ୍ରସ୍ତାବ ରହିଛି ।

ଶିକ୍ଷାର୍ଥୀ ବିମାନ ଚାଳକମାନଙ୍କୁ ବିମାନ ଚାଳନା ସମ୍ପର୍କରେ ତାଲିମ୍ ଦେବାପାଇଁ ଏବଂ ଓଡ଼ିଶା ଶିକ୍ଷାର୍ଥୀଙ୍କ ବିମାନ ଚାଳନା ଭାବ ଉଦ୍ରେକ କରାଇବା ପାଇଁ ଦୁଇଟି ପୁଷ୍ପକ ବିମାନ ଓ ଗୋଟିଏ ସେସ୍‌ନା ୧୫୨ ଏରୋବ୍ୟାଟ୍ ସାହାଯ୍ୟରେ ବିମାନ ଚାଳନା ତାଲିମ ଅନୁଷ୍ଠାନ କାର୍ଯ୍ୟ କରୁଛି । ଏବେ ସେଥିରୁ ଗୋଟିଏ ପୁଷ୍ପକ ବିମାନ ଉଡ଼ିପାରୁଥିବା ଅବସ୍ଥାରେ ଅଛି । ଅନ୍ୟ ଦୁଇଟି ବିମାନକୁ ଶୀଘ୍ର ମରାମତି କରିବାର ଉଦ୍ୟମ ହେଉଛି । ରାଜ୍ୟ ସରକାର ଶୀଘ୍ର ଆଉ ଗୋଟିଏ ସେସ୍‌ନା ଏରୋବ୍ୟାଟ୍ କିଣିବାର ପ୍ରସ୍ତାବ ରଖିଛନ୍ତି ।

---

ମନ୍ତ୍ରୀ, ବାଣିଜ୍ୟ ଓ ପରିବହନ ।

# କୁଷ୍ଠ ରୋଗର ନିରାକରଣ ଓ ଚିକିତ୍ସା

*** ମୁସ୍ତାଫିଜ୍ ଅହମ୍ମଦ୍**

କୁଷ୍ଠ ରୋଗ ସହିତ ମାନବ ସମାଜ ବୈଦିକ ଯୁଗରୁ ପରିଚିତ । ଏହା ଏକ ପୁରାତନ ରୋଗ । ଆମର ବିଭିନ୍ନ ପୁରାଣରେ ଏହି ରୋଗର ବର୍ଣ୍ଣନା ଥିବାର ଜଣାଯାଏ । ଏହା ପ୍ରଥମେ ଛଉ ଆକାରରେ ମନୁଷ୍ୟ ଦେହରେ ଦେଖାଯାଏ । ସବୁ ଛଉ ଯେ କୁଷ୍ଠ ରୋଗ ଏହା ଭାବିବା ଏକ ଭ୍ରାନ୍ତ ଧାରଣା । ସାଧାରଣତଃ କୁଷ୍ଠ ଛଉ ଈଷତ୍ ପିଙ୍ଗଳ ବା ତମ୍ବାଳିଆ ରଙ୍ଗର ଚିକ୍କଣିଆ ଏବଂ ତେଲିଆ ଦେଖାଯାଏ । ଏହି ଛଉ ଥିବା ସ୍ଥାନରେ ଲୋମ ନଥାଏ ଓ ଝାଳ ବାହାରେ ନାହିଁ । ଏହି ସ୍ଥାନରେ ସ୍ପର୍ଶ ଶକ୍ତି ଲୋପ ହୋଇଯାଏ । ଛଉ ଉପରେ ପିନ୍ କଣ୍ଟାରେ ଫୋଡ଼ିଲେ କିମ୍ବା ଗରମ/ଥଣ୍ଡା ବସ୍ତୁ ଛୁଇଁଲେ କିଛି ଜଣାପଡ଼େ ନାହିଁ । ଏହି ଛଉ କୁଣ୍ଡେଇ ହୁଏ ନାହିଁ । ସବୁ ଛଉ ସଂକ୍ରାମକ ନୁହେଁ । ଶହେ ଜଣ କୁଷ୍ଠ ରୋଗୀଙ୍କ ମଧ୍ୟରୁ ମାତ୍ର ୧୦–୧୫ ଜଣ ରୋଗୀ ସଂକ୍ରାମକ ଅଟନ୍ତି । ନିମ୍ନୋକ୍ତ ଚାରିଗୋଟି ଚିହ୍ନ ଓ ଲକ୍ଷଣ ମଧ୍ୟରୁ ଯେ କୌଣସି ଦୁଇଟି ଲକ୍ଷଣ ଥିଲେ ଏହାକୁ କୁଷ୍ଠ ରୋଗୀ ବୋଲି ଜାଣିବ ।

(୧) ଚର୍ମ ଉପରେ ଫିକାଳିଆ ବା ତମ୍ବା ରଙ୍ଗର ଛଉ ।
(୨) ଛଉ ସ୍ଥାନରେ ସ୍ପର୍ଶ ଶକ୍ତି ନଷ୍ଟ ହୋଇଯାଇଥାଏ ।
(୩) ମୁଖ୍ୟ ସ୍ନାୟୁ ଫୁଲି ମୋଟା ହୋଇଯାଇଥାଏ ।
(୪) ଚର୍ମ ପରୀକ୍ଷା କଲେ ଚର୍ମ ସ୍ମିୟର (Smear)ରେ କୁଷ୍ଠ ଜୀବାଣୁ ମିଳିବ ।

୧୮୭୩ ଖ୍ରୀଷ୍ଟାବ୍ଦରେ ନରୱେ ଦେଶର ହାନ୍‌ସେନ୍ ନାମକ ଜଣେ ବୈଜ୍ଞାନିକ ପ୍ରଥମେ ଗବେଷଣା ଦ୍ୱାରା ଜାଣିପାରିଲେ ଯେ ଏହି ରୋଗଟିଏ ଅନ୍ୟାନ୍ୟ ରୋଗ ଭଳି ରୋଗ ଓ ଏହା ଜୀବାଣୁ ଦ୍ୱାରା ସୃଷ୍ଟି ହୁଏ । ଏହି ରୋଗ ଦୁଇ ପ୍ରକାର ଯଥା–ସଂକ୍ରାମକ ଓ ଅସଂକ୍ରାମକ । ସଂକ୍ରାମକ କୁଷ୍ଠ ରୋଗୀର କାଶ, କଫ ଓ ଛିଙ୍କରେ ନିର୍ଗତ ଜୀବାଣୁ ବାୟୁରେ ଉଡ଼ି ବୁଲନ୍ତି ଓ ସୁସ୍ଥ ଲୋକର ନିଶ୍ୱାସରେ ଯାଇ ରୋଗ ସଂକ୍ରମିତ କରନ୍ତି । ଅନ୍ତ କେତେକ କ୍ଷେତ୍ରରେ ଏହି ଜୀବାଣୁ ଚର୍ମରୁ ବାହାରି ସୁସ୍ଥ ଲୋକଙ୍କୁ ଆକ୍ରମଣ କରିଥାଆନ୍ତି । ଏହା ସାଧାରଣତଃ ଚର୍ମ ଓ ସ୍ନାୟୁକୁ ଆକ୍ରମଣ କରେ । କୁଷ୍ଠ ରୋଗ ଧନୀ, ଦରିଦ୍ର, ସବର୍ଣ୍ଣ, ଅସବର୍ଣ୍ଣ, ଶିକ୍ଷିତ, ଅଶିକ୍ଷିତ ନିର୍ବିଶେଷରେ ସମସ୍ତଙ୍କୁ ହୋଇପାରେ । ଏହି ରୋଗକୁ ଆରମ୍ଭରୁ ନିୟମିତ ରୂପେ ଚିକିତ୍ସା କଲେ ରୋଗୀ ବିକଳାଙ୍ଗ ହୁଏନାହିଁ । ରୋଗୀର ନିଜ ଘରେ ଛାଡି କୁଟୁମ୍ବଙ୍କ ଗହଣରେ ରହି ଚିକିତ୍ସିତ ହୋଇପାରିବ । ରୋଗୀକୁ ସମାଜରୁ ବାସନ୍ଦ କରିବା ଆଦୌ ଉଚିତ ନୁହେଁ ।

ଏହି ପୂର୍ବରୁ 'ଡାପ୍‌ସୋନ' ନାମକ ଏକ ଔଷଧ ଦ୍ୱାରା କୁଷ୍ଠ ରୋଗୀର ଚିକିତ୍ସା କରାଯାଉଥିଲା । ରୋଗୀକୁ ଏହି ଔଷଧ ଦୀର୍ଘ ଦିନ ଧରି ନିୟମିତ ସେବନ କରିବାକୁ ପଡୁଥିଲା । ମାତ୍ର ବୈଜ୍ଞାନିକମାନଙ୍କର ପ୍ରଚେଷ୍ଟା ଓ ଗବେଷଣା ଫଳରେ ନିକଟ ଅତୀତରେ କେତେକ ଶକ୍ତିଶାଳୀ ଓ ଆଶୁ ଫଳପ୍ରଦ ଔଷଧ ଉଦ୍ଭାବନ କରାଯାଇଅଛି । ଏକ ସମୟରେ ଏକାଧିକ ଔଷଧ ସେବନ ନିମନ୍ତେ ଏକ ନୂତନ ଚିକିତ୍ସା ପଦ୍ଧତି ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନ (World Health Organisation) ଦ୍ୱାରା ପ୍ରଚଳନ କରାଯାଉଅଛି । ଏହାକୁ ବହୁବିଧ ଔଷଧ ଉପଚାର (Multi Drug Therapy) ବୋଲି ନାମିତ କରାଯାଇଅଛି ।

ଏକାଥରକେ ତିନୋଟି ଔଷଧ ଯଥା–ରିଫାମ୍ପିସିନ୍, ଲାମ୍ପ୍ରିନ୍ ଓ ଡାପ୍‌ସୋନ୍ ପ୍ରୟୋଗ କରାଯାଇ ରୋଗର ଚିକିତ୍ସା କରାଯାଇଥାଏ । ଏହି ତିନୋଟି ଔଷଧକୁ ଅନୁପାତରେ ସଂକ୍ରାମକ ରୋଗୀ ଦୁଇ ବର୍ଷ ଏବଂ ଅସଂକ୍ରାମକ ରୋଗୀ ମାତ୍ର ଛଅ ମାସ ସେବନ କଲେ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କରିଥାଏ । ଏହି ଔଷଧ ବର୍ତ୍ତମାନ ଭାରତ ସରକାରଙ୍କ ସହାୟତାରେ ବିନା ମୂଲ୍ୟରେ ରୋଗୀମାନଙ୍କୁ ବିତରଣ କରାଯାଉଅଛି । ଭାରତ ସରକାରଙ୍କ ସାହାଯ୍ୟରେ କୁଷ୍ଠ ନିରାକରଣ ପାଇଁ ଓଡ଼ିଶାରେ ବହୁବିଧ ଚିକିତ୍ସା କାର୍ଯ୍ୟକ୍ରମ ୧୯୮୩ ମସିହାରୁ କାର୍ଯ୍ୟକାରୀ ହୋଇ ଆସୁଅଛି । ଏ ପର୍ଯ୍ୟନ୍ତ ଓଡ଼ିଶାର ୯ଟି ଜିଲ୍ଲା ଏହି ଚିକିତ୍ସା ପଦ୍ଧତିରେ ଅନ୍ତର୍ଭୁକ୍ତ । ଏହି ବହୁବିଧ ଚିକିତ୍ସା କାର୍ଯ୍ୟକ୍ରମ ସ୍ୱତନ୍ତ୍ର କୁଷ୍ଠ ନିରାକରଣ ସଂସ୍ଥା ଓ ତାଲିମପ୍ରାପ୍ତ ଚିକିତ୍ସା/ଅନୁଚିକିତ୍ସା କର୍ମୀମାନଙ୍କ ଦ୍ୱାରା ପରିଚାଳିତ ହେଉଅଛି । ଏବେ ସମଗ୍ର ଓଡ଼ିଶାର ୯୨ ପ୍ରତିଶତ ଲୋକସଂଖ୍ୟାକୁ ଏହି ସ୍ୱତନ୍ତ୍ର ଚିକିତ୍ସା ପଦ୍ଧତିରେ ଅନ୍ତର୍ଭୁକ୍ତ କରାଯାଇ ପାରିଛି ।

ବର୍ତ୍ତମାନ ସମଗ୍ର ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ୬୭ଟି କୁଷ୍ଠ ନିରାକରଣ କେନ୍ଦ୍ର, ୧୧ଟି ଜିଲ୍ଲା କୁଷ୍ଠ କାର୍ଯ୍ୟକ୍ରମ, ୧୩ଟି ଅସ୍ଥାୟୀ ୨୦ ଶଯ୍ୟା ବିଶିଷ୍ଟ କୁଷ୍ଠ ଚିକିତ୍ସା ଓ୍ୱାର୍ଡ଼, ଦୁଇଗୋଟି କୁଷ୍ଠ କର୍ମୀ ତାଲିମ କେନ୍ଦ୍ର, କଟକରେ ଗୋଟିଏ ୧୦୦ ଶଯ୍ୟା ବିଶିଷ୍ଟ କୁଷ୍ଠ ଚିକିତ୍ସା ଡାକ୍ତରଖାନା ଓ ଛତ୍ରପୁରଠାରେ ଗୋଟିଏ ୧୦ ଶଯ୍ୟା ବିଶିଷ୍ଟ ଡାକ୍ତରଖାନା ଖୋଲାଯାଇଅଛି ।

ଏହି ସମସ୍ତ ଅନୁଷ୍ଠାନରେ ୧୧ ଜଣ ଜିଲ୍ଲା କୁଷ୍ଠାଧିକାରୀ, ୬୮ ଜଣ ଡାକ୍ତର, ୧୩୯ ଜଣ ଅଣଭେଷଜ ନିରୀକ୍ଷକ (Non Medical Supervisor), ୧,୦୬୯ ଜଣ ପାରା ମେଡିକାଲ୍ ଓ୍ୱାର୍କର, ୧୦ ଜଣ ହେଲଥ୍ ଏଜୁକେଟର୍, ୧୦ ଜଣ ଫିଜିଓଥେରାପିଷ୍ଟ ଓ ୧୨୧ ଜଣ ଲାବୋରେଟୋରୀ ଟେକ୍‌ନିସିଆନ୍ କାର୍ଯ୍ୟ କରୁଛନ୍ତି । ଗୋଟିଏ କୁଷ୍ଠ ନିରାକରଣ କେନ୍ଦ୍ରରେ ଅନ୍ୟୂନ

ଏଥିରୁ ୨୦ ଜଣ ଅନୁଚିକିତ୍ସା କର୍ମୀ କାର୍ଯ୍ୟ କରନ୍ତି । ପ୍ରତ୍ୟେକ ଅନୁଚିକିତ୍ସା କର୍ମୀଙ୍କୁ ୨୦ରୁ ୨୫ ହଜାର ଲୋକସଂଖ୍ୟା ମଧ୍ୟରେ ପ୍ରତ୍ୟେକ ଗ୍ରାମରେ କୁଷ୍ଠ ରୋଗ ଚିହ୍ନଟ କାର୍ଯ୍ୟ କରିବାକୁ ପଡ଼ିଥାଏ ।

ଅଣଭେଷଜ ନିରୀକ୍ଷକ (Non Medical Supervisor) ଅନୁଚିକିତ୍ସା କର୍ମୀଙ୍କ କାର୍ଯ୍ୟ ତଦାରଖ କରନ୍ତି ଏବଂ ଅସୁବିଧା ସ୍ଥଳରେ ସରେଜମିନ କାର୍ଯ୍ୟ ପରିଦର୍ଶନ କରି ସମସ୍ୟାର ସମାଧାନ କରନ୍ତି । କୁଷ୍ଠ ନିରାକରଣ କେନ୍ଦ୍ରରେ ଡାକ୍ତରଙ୍କ ସହ ରୋଗୀମାନଙ୍କ ଚିକିତ୍ସା କାର୍ଯ୍ୟରେ ସହାୟତା କରନ୍ତି । କୁଷ୍ଠ ରୋଗୀ ଚିହ୍ନଟ ହୋଇସାରିଲା ପରେ ତାଙ୍କର ଲସା (Smear) ପରୀକ୍ଷା କରିବା ପାଇଁ କୁଷ୍ଠ ନିରାକରଣ କେନ୍ଦ୍ରରେ ଦୁଇଜଣ ଲେଖାଏଁ ଲାବୋରେଟୋରୀ ଟେକ୍ନିସିଆନ୍ ନିଯୁକ୍ତି ପାଇଛନ୍ତି । ପ୍ରାରମ୍ଭିକ ବିକଳାଙ୍ଗ ଅବସ୍ଥାକୁ ଆୟତ୍ତାଧୀନ କରି ରୋଗୀଙ୍କୁ କେତେକ ଉପଦେଶ ଦେଇ ଓ ଚିକିତ୍ସା କରି ରୋଗୀଙ୍କୁ ବିକଳାଙ୍ଗ ଅବସ୍ଥାରୁ ସୁଧାରିବା ପାଇଁ ସରକାରଙ୍କ ତରଫରୁ ଟ୍ରେନିଂ ପ୍ରାପ୍ତ ଫିଜିଓଥେରାପିଷ୍ଟ ନିଯୁକ୍ତ ଅଛନ୍ତି ।

କୁଷ୍ଠ ନିରାକରଣ କେନ୍ଦ୍ରର ଡାକ୍ତର, ଅନୁଚିକିତ୍ସା କର୍ମୀ, ଅଣଭେଷଜ ନିରୀକ୍ଷକ, ହେଲଥ୍ ଏଜୁକେଟରଙ୍କର କାର୍ଯ୍ୟ ତନଖି କରନ୍ତି ଓ ଚିହ୍ନଟ ହୋଇଥିବା କୁଷ୍ଠ ରୋଗୀମାନଙ୍କ ବହୁବିଧ ଚିକିତ୍ସା ପ୍ରଦାନ କରନ୍ତି ।

ଜିଲ୍ଲା କୁଷ୍ଠାଧିକାରୀ ଜିଲ୍ଲାରେ ଥିବା ସମସ୍ତ କୁଷ୍ଠ ନିରାକରଣ କେନ୍ଦ୍ରମାନଙ୍କର କାର୍ଯ୍ୟ ତଦାରଖ କରି ସରକାରଙ୍କୁ ମାସିକ ବିବରଣୀମାନ ପ୍ରଦାନ କରନ୍ତି ।

ବହୁବିଧ ଚିକିତ୍ସା ପଦ୍ଧତି ପ୍ରଚଳନ ହେବା ପରଠାରୁ ଅଦ୍ୟାବଧି ଓଡ଼ିଶାରେ ୨ ଲକ୍ଷ ୯୫ ହଜାର ୯ ଶହ ୭୨ ଜଣ କୁଷ୍ଠ ରୋଗୀଙ୍କୁ ମିଶ୍ରିତ ଚିକିତ୍ସା ପଦ୍ଧତିରେ ଅନ୍ତର୍ଭୁକ୍ତ କରାଯାଇ ତନ୍ମଧ୍ୟରୁ ୧ ଲକ୍ଷ ୯୦ ହଜାର ୧୭୫ ଜଣ ରୋଗୀଙ୍କୁ ରୋଗମୁକ୍ତ କରାଯାଇ ପାରିଲାଣି । ନୂଆ ଚିହ୍ନଟ ହୋଇଥିବା ୧ ଲକ୍ଷ ୭୦ ହଜାର ୨୭୬ ଜଣ ରୋଗୀଙ୍କ ମଧ୍ୟରୁ ଅଧିକାଂଶ ରୋଗୀ ସ୍ୱେଚ୍ଛାକୃତ ଭାବେ ନିଜକୁ ଚିହ୍ନଟ କରାଇ ଚିକିତ୍ସା ଗ୍ରହଣ କରିଛନ୍ତି । ଯାହା କି ଏହି ନୂଆ ଚିକିତ୍ସା ପ୍ରଣାଳୀ ପ୍ରତି ଜନ ସମାଜର ଆସ୍ଥା ଥିବାର ସୂଚନା ଦିଏ । ଏହା ଫଳରେ ରାଜ୍ୟରେ ପ୍ରତି ହଜାର ଲୋକସଂଖ୍ୟାରେ କୁଷ୍ଠ ରୋଗ ହାର ୧୭.୧୨ରୁ ୩.୬କୁ ଖସି ଆସିଛି । ବହୁବିଧ ଚିକିତ୍ସା ପଦ୍ଧତି ପ୍ରଥମରୁ ରୂପେ ପରିଚାଳନା ହେବା ଦ୍ୱାରା ଓଡ଼ିଶାରେ ପୂର୍ବରୁ ଥିବା କୁଷ୍ଠ ରୋଗୀ ସଂଖ୍ୟାରେ ହଜାର ପ୍ରତି ହାର ହ୍ରାସ ପାଇଛି । ତା'ଛଡ଼ା ନୂଆ ଚିହ୍ନଟ ହୋଇଥିବା ରୋଗୀଙ୍କ ମଧ୍ୟରୁ ବିକଳାଙ୍ଗ ରୋଗୀ ସଂଖ୍ୟା ମଧ୍ୟ ହ୍ରାସ ପାଇଛି ।

ବର୍ତ୍ତମାନ ଓଡ଼ିଶାରେ ୧ ଲକ୍ଷ ୧୪ ହଜାର ୬୭ ଜଣ ରୋଗୀ ଚିକିତ୍ସାଧୀନ ଅଛନ୍ତି । ତନ୍ମଧ୍ୟରୁ ୭୪ ହଜାର ୭ ଶହ ୧୩ ଜଣଙ୍କୁ ବହୁବିଧ ଚିକିତ୍ସା ପ୍ରଦାନ କରାଯାଉଅଛି । ଅବଶିଷ୍ଟ ୩୯ ହଜାର ୩ ଶହ ୫୪ ଜଣ ରୋଗୀଙ୍କୁ ଡାପ୍‌ସୋନ୍ ମନୋଥେରାପି ଚିକିତ୍ସା ପ୍ରଦାନ କରାଯାଉଅଛି ।

ଚଳିତ ବର୍ଷ ଆରମ୍ଭରୁ ଅବଶିଷ୍ଟ ୪ଟି ଜିଲ୍ଲା ଯଥା–କଳାହାଣ୍ଡି, କେନ୍ଦୁଝର, ଫୁଲବାଣୀ ଓ ସୁନ୍ଦରଗଡ଼ ଜିଲ୍ଲାମାନଙ୍କରେ ବହୁବିଧ ଚିକିତ୍ସା ପଦ୍ଧତିର ପ୍ରଚଳନ ପାଇଁ ପ୍ରାରମ୍ଭିକ ପଦକ୍ଷେପ ନିଆଯାଇଅଛି ଏବଂ କାର୍ଯ୍ୟକାରୀ ଯୋଜନା ପ୍ରସ୍ତୁତି କରାଯାଇଅଛି । ରୋଗୀ ଚିହ୍ନଟ କରିବା କାର୍ଯ୍ୟ ଆରମ୍ଭ ହେଲାଣି ଏବଂ ୧୯୯୩–୯୪ ଆର୍ଥିକ ବର୍ଷରେ ଏହି ଚାରୋଟି ଜିଲ୍ଲାରେ ବହୁବିଧ ଚିକିତ୍ସା ପ୍ରଚଳନ କରାଯିବାର ସ୍ଥିର ହୋଇଛି ।

ବହୁବିଧ ଚିକିତ୍ସା କାର୍ଯ୍ୟକ୍ରମକୁ ସଫଳ ରୂପାୟନ ଦେବା ପାଇଁ ଭାରତ ସରକାରଙ୍କ ଅନୁଦାନ ପରେ ମଧ୍ୟ ବିଭିନ୍ନ ଆନ୍ତର୍ଜାତୀୟ ସ୍ୱେଚ୍ଛାସେବୀ ସଂସ୍ଥା ଯଥା–ଡାନିଡା, ଲେପ୍ରା ଇଣ୍ଡିଆ, ହୋଏନା, ଦି ଲେପ୍ରସି ମିଶନ୍, ଜର୍ମାନ୍ ଲେପ୍ରସି ରିଲିଫ୍ ଆସୋସିଏସନ୍ମାନେ ମଧ୍ୟ ଓଡ଼ିଶାରେ କୁଷ୍ଠ ରୋଗ ନିରାକରଣ ପାଇଁ ଆବଶ୍ୟକୀୟ ସାହାଯ୍ୟ ପ୍ରଦାନ କରୁଛନ୍ତି । ଏହା ବ୍ୟତୀତ ଓଡ଼ିଶାର କେତେକ ସ୍ୱେଚ୍ଛାସେବୀ ସଂସ୍ଥା ବିଭିନ୍ନ ଅଞ୍ଚଳରେ ସରକାରଙ୍କର କୁଷ୍ଠ ନିରାକରଣ ପାଇଁ ଆବଶ୍ୟକୀୟ ସାହାଯ୍ୟ ପ୍ରଦାନ କରୁଛନ୍ତି । ଏହା ବ୍ୟତୀତ ଓଡ଼ିଶାର କେତେକ ସ୍ୱେଚ୍ଛାସେବୀ ସଂସ୍ଥା ବିଭିନ୍ନ ଅଞ୍ଚଳରେ ସରକାରଙ୍କର କୁଷ୍ଠ ନିରାକରଣ ଯୋଜନାରେ ସାମିଲ ହୋଇ କାର୍ଯ୍ୟ କରୁଛନ୍ତି ।

ବିଶ୍ୱ ସ୍ୱାସ୍ଥ୍ୟ ସଂଘ ଓ ଭାରତ ସରକାର ଆସନ୍ତା ୨୦୦୦ ଶତାବ୍ଦୀ ସୁଦ୍ଧା ଆମ ଦେଶରୁ କୁଷ୍ଠ ରୋଗ ସମ୍ପୂର୍ଣ୍ଣ ନିରାକରଣ ପାଇଁ ସଂକଳ୍ପବଦ୍ଧ । ଏହି ପରିପ୍ରେକ୍ଷୀରେ ଓଡ଼ିଶାର ରାଜ୍ୟ ସରକାର ଲକ୍ଷ୍ୟ ହାସଲ ଦିଗରେ କାର୍ଯ୍ୟପନ୍ଥା ସ୍ଥିର କରିଛନ୍ତି । ଏହି ନିର୍ଦ୍ଦିଷ୍ଟ ଯୋଜନା କାର୍ଯ୍ୟକାରୀ ହେବା ପାଇଁ କେବଳ ସରକାରଙ୍କର ଯେ ଦାୟିତ୍ୱ ରହିଛି ତାହା ନୁହେଁ ଜନସାଧାରଣଙ୍କ ସହଯୋଗ ଦ୍ୱାରା କୁଷ୍ଠ ରୋଗ ନିରାକରଣ କାର୍ଯ୍ୟକ୍ରମ ସାଫଲ୍ୟ ଅର୍ଜନ କରିପାରିବ ଏଥିରେ ସନ୍ଦେହ ନାହିଁ ।

## ମନେ ରଖନ୍ତୁ :

* କୁଷ୍ଠ ରୋଗ ଜୀବାଣୁ ଯୋଗୁଁ ହୋଇଥାଏ ।
* ଈଷତ୍ ସଫା କିମ୍ବା ତମ୍ବାଳିଆ ଛଉ କୁଷ୍ଠ ରୋଗର ପ୍ରଥମ ଲକ୍ଷଣ ।
* ପ୍ରଚଳିତ ବହୁବିଧ ଚିକିତ୍ସା ପଦ୍ଧତି ଦ୍ୱାରା କୁଷ୍ଠ ରୋଗ ସମ୍ପୂର୍ଣ୍ଣ ଭାବରେ ଆରୋଗ୍ୟ ହୁଏ ।
* ବହୁବିଧ ଚିକିତ୍ସା ପଦ୍ଧତିରେ ଚିକିତ୍ସିତ ହେଉଥିବା ରୋଗୀଙ୍କଠାରୁ କୁଷ୍ଠ ରୋଗ ସୁସ୍ଥ ଲୋକ ଦେହକୁ ଡିଏଁ ନାହିଁ (ସଂକ୍ରମିତ ହୋଇପାରେନା) ।
* ରୋଗୀ ନିଜ ପରିବାର, ଜାତି କୁଟୁମ୍ବ ଗହଣରେ ରହି ଚିକିତ୍ସିତ ହୋଇପାରିବେ, ବିଦ୍ୟାଳୟରେ ଅଧ୍ୟୟନ କରିପାରିବେ, କର୍ମ କ୍ଷେତ୍ରରେ ମଧ୍ୟ ସହକର୍ମୀଙ୍କ ସହ କାର୍ଯ୍ୟ କରିପାରିବେ ।
* ପ୍ରାରମ୍ଭରୁ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ନିୟମିତ ଚିକିତ୍ସା କଲେ ରୋଗୀ ବିକଳାଙ୍ଗ ହୁଏ ନାହିଁ ।
* କୁଷ୍ଠ ରୋଗର ସମସ୍ତ ଔଷଧ ସରକାରଙ୍କ ତରଫରୁ ମାଗଣାରେ ମିଳେ ।
* ସମସ୍ତ ସରକାରୀ ଡାକ୍ତରଖାନାମାନଙ୍କରେ କୁଷ୍ଠ ରୋଗ ଔଷଧ ବଣ୍ଟନ କେନ୍ଦ୍ର ଖୋଲାଯାଇ ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କରେ ରୋଗୀମାନଙ୍କୁ ଔଷଧ ଯୋଗାଇ ଦିଆଯାଏ ।

ମନ୍ତ୍ରୀ, ସ୍ୱାସ୍ଥ୍ୟ ବିଭାଗ, ଓଡ଼ିଶା ।

# ପ୍ରଗତିର ତିନୋଟି ବର୍ଷ
# ଗ୍ରାମ୍ୟ ଉନ୍ନୟନ ବିଭାଗ

* ଅଜିତ କୁମାର ତ୍ରିପାଠୀ

ସ୍ୱାଧୀନତା ଉତ୍ତର କାଳରେ ବହୁଦିନ ଧରି ଗ୍ରାମ୍ୟ ଉନ୍ନୟନ ଏକ ସ୍ୱତନ୍ତ୍ର ବିଭାଗ ନଥିଲା । ବର୍ତ୍ତମାନର ସରକାର କ୍ଷମତାସୀନ ହେବା ପରେ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମର ଯଥାଯଥ ରୂପାୟନ ସହ କ୍ଷୁଦ୍ର ଜଳସେଚନ, ଉଠାଜଳସେଚନ, ଗ୍ରାମ୍ୟ ଜଳ ଯୋଗାଣ ଓ ପରିମଳ ଏବଂ ନିର୍ମାଣ (ଗ୍ରାମ୍ୟ ରାସ୍ତା ଏବଂ କୋଠାବାଡ଼ି)ଗୁଡ଼ିକର ସୁପରିଚାଳନା ଏବଂ ସଫଳ ସମନ୍ୱୟକୁ ଦୃଷ୍ଟିରେ ରଖି, ଓଡ଼ିଶା ସରକାର ଜୁଲାଇ ୧, ୧୯୯୦ ମସିହାରେ ଗ୍ରାମ୍ୟ ଉନ୍ନୟନ ବିଭାଗ ଗଠନ କଲେ । ଏହି ବିଭାଗ ଗଠନ ହେବା ପୂର୍ବରୁ କ୍ଷୁଦ୍ର ଜଳସେଚନ ଏବଂ ଉଠାଜଳସେଚନ କାର୍ଯ୍ୟକ୍ରମ ସେଚନ ଶକ୍ତି ବିଭାଗ ଅନ୍ତର୍ଭୁକ୍ତ ଥାଇ ଆବଶ୍ୟକ ଧ୍ୟାନ ଏବଂ ପାଣ୍ଠି ପାଇପାରୁନଥିଲା । ସେହିପରି ଗ୍ରାମ୍ୟ ଜଳଯୋଗାଣ ଏବଂ ପରିମଳ କାର୍ଯ୍ୟ ଗୃହ ଓ ନଗର ଉନ୍ନୟନ ବିଭାଗ ଅଧୀନରେ ଥାଇ ଏହା ଯଥେଷ୍ଟ ଧ୍ୟାନ ଏବଂ ପାଣ୍ଠି ପାଉନଥିଲା । ପୂର୍ବରୁ ପୂର୍ତ୍ତ ବିଭାଗ ଅଧୀନରେ ଥିବା ଗ୍ରାମ୍ୟ ରାସ୍ତା ଏବଂ କୋଠାବାଡ଼ି କାର୍ଯ୍ୟର ମଧ୍ୟ ଅନୁରୂପ ଅବସ୍ଥା ଥିଲା । ବିଶେଷ ଧ୍ୟାନାଭାବରୁ ଉକ୍ତ କାର୍ଯ୍ୟକ୍ରମଗୁଡ଼ିକର ସଫଳ ରୂପାୟନ ଅବହେଳିତ ନହେଲେ ମଧ୍ୟ ଆଶାନୁରୂପ ପ୍ରଗତି ଲାଭ କରିପାରୁନଥିଲା । ଅଧୁନା ସ୍ୱତନ୍ତ୍ର ବିଭାଗର ପର୍ଯ୍ୟାପ୍ତ ପ୍ରଚେଷ୍ଟା ଫଳରେ ଗ୍ରାମାଞ୍ଚଳର ସର୍ବାଙ୍ଗୀନ ବିକାଶ ସାଧନ କରିବା ନୂତନଭାବେ ଗଠିତ ହୋଇଥିବା ଗ୍ରାମ୍ୟ ଉନ୍ନୟନ ବିଭାଗର ଅଭିପ୍ରାୟ ।

### କ୍ଷୁଦ୍ର ଜଳସେଚନ :

ଯୋଜନା ପ୍ରକ୍ରିୟାର ଆରମ୍ଭରୁ କୃଷି ଉତ୍ପାଦନ ଉପରେ ଗୁରୁତ୍ୱ ଦିଆଯାଉଥିଲେ ମଧ୍ୟ, ଯଥେଷ୍ଟ ଜଳସେଚନର ସୁବିଧା ଅଭାବ ହେତୁ ଏହି କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ଅଗ୍ରଗତି ହୋଇପାରିନାହିଁ । ଓଡ଼ିଶାରେ ଉଭୟ କ୍ଷୁଦ୍ରଜଳସେଚନ (ପ୍ରବାହ) ଏବଂ ଉଠାଜଳସେଚନର ବ୍ୟାପକ ସାମର୍ଥ୍ୟ ରହିଛି, ଯାହାର ପୂର୍ଣ୍ଣ ଉପଯୋଗ ଏକାନ୍ତ ଆବଶ୍ୟକ । କ୍ଷୁଦ୍ରଜଳସେଚନ ସଂସ୍ଥା ଅଧୀନରେ ଥିବା ପ୍ରକଳ୍ପମାନଙ୍କର ଜଳସେଚନ କ୍ଷମତା ୬୦ ହେକ୍ଟରୁ ୪୦୦୦ ଏକର ମଧ୍ୟରେ ସୀମିତ ।

ସପ୍ତମ ଯୋଜନାକାଳ ଶେଷ (୧୯୮୯-୯୦) ସୁଦ୍ଧା, କ୍ଷୁଦ୍ରଜଳସେଚନ ପ୍ରକଳ୍ପଗୁଡ଼ିକ ଦ୍ୱାରା ୩,୪୪,୯୬୩ ହେକ୍ଟର ଖରିଫ ଏବଂ ୬୦,୦୦୦ ହେକ୍ଟର ରବି ଜମିକୁ ଜଳଯୋଗାଣ କ୍ଷମତା ସୃଷ୍ଟି କରାଯାଇଥିଲା । ୧୯୯୦-୯୧ ଏବଂ ୧୯୯୧-୯୨ (ଡ଼ିସେମ୍ବର ୯୨ ପର୍ଯ୍ୟନ୍ତ) ବର୍ଷରେ ସମୁଦାୟ ୪,୬୭୭ ହେକ୍ଟର ଖରିଫ ଏବଂ ୪୯୨ ହେକ୍ଟର ରବି ଜମିକୁ ଅତିରିକ୍ତ ଜଳ ଯୋଗାଣ କ୍ଷମତା ସୃଷ୍ଟି କରାଯାଇଛି । ରାଜ୍ୟରେ ପ୍ରଥମ ଥର ପାଇଁ ୩୫୦ରୁ ଅଧିକ ଅଞ୍ଚଳ କ୍ଷୁଦ୍ରଜଳସେଚନ ପ୍ରକଳ୍ପଗୁଡ଼ିକର ପୁନରୁଦ୍ଧାର କାର୍ଯ୍ୟ ଗ୍ରାମ୍ୟ ଉନ୍ନୟନ ବିଭାଗ ଦ୍ୱାରା ହାତକୁ ନିଆଯାଇଛି । ଏତଦ୍‌ବ୍ୟତୀତ ୟୁରୋପୀୟ ଅର୍ଥନୈତିକ ସଂସ୍ଥାଠାରୁ ୧୫ କୋଟି ଟଙ୍କାର ଋଣ ଆଣି ଅଧିକ ଜଳସେଚନ ପ୍ରକଳ୍ପ ସ୍ଥାପନର ଯୋଜନା କରାଯାଉଅଛି ।

### ଉଠାଜଳସେଚନ :

ସପ୍ତମ ଯୋଜନାକାଳ ଶେଷ ସୁଦ୍ଧା ଓଡ଼ିଶା ଉଠାଜଳସେଚନ ନିଗମ ଦ୍ୱାରା ସର୍ବମୋଟ ୧୧,୭୨୧ଟି ଉଠାଜଳସେଚନ ପଏଣ୍ଟ ସ୍ଥାପନ କରାଯାଇ ୨,୫୦,୩୧୩ ହେକ୍ଟର ଖରିଫ ଏବଂ ୧,୫୦,୧୯୦ ହେକ୍ଟର ରବି ଜମିକୁ ଜଳସେଚନ କ୍ଷମତା ସୃଷ୍ଟି କରାଯାଇଥିଲା । ୧୯୯୦-୯୨ ମଧ୍ୟରେ, ୧,୨୧୧ଟି ଅଧିକ ପଏଣ୍ଟ ସ୍ଥାପନ କରାଯାଇ ୨୪,୦୦୫ ହେକ୍ଟର ଖରିଫ ଏବଂ ୧୩,୫୦୦ ହେକ୍ଟର ରବି ଫସଲ ପାଇଁ ଜଳସେଚନ କ୍ଷମତା ସୃଷ୍ଟି କରାଯାଇଛି । ୧୯୯୩-୯୪ ବର୍ଷରେ ୭୦୦ଟି ନୂତନ ପଏଣ୍ଟ ସ୍ଥାପନ କରାଯାଇ ୧୪,୦୦୦ ହେକ୍ଟର ଜମିକୁ ଅତିରିକ୍ତ ଜଳସେଚନ କ୍ଷମତାସୃଷ୍ଟି କରାଯିବାର ଯୋଜନା ଅଛି ।

ଜର୍ମାନୀର କେ: ଏଫ୍: ଡବ୍ଲ୍ୟୁ ସଂସ୍ଥା ଦ୍ୱାରା ସାହାଯ୍ୟ ପ୍ରାପ୍ତ ଏକ ପ୍ରକଳ୍ପ ୧୯୯୩-୯୮ ବର୍ଷମାନଙ୍କରେ କାର୍ଯ୍ୟକାରୀ କରାଯିବ । ଏହି ଯୋଜନା ଅନୁଯାୟୀ ଉପକୂଳବର୍ତ୍ତୀ କଟକ, ପୁରୀ ଏବଂ ବାଲେଶ୍ୱର ଜିଲ୍ଲାରେ ୬୨୦ଟି ନଳକୂପ, ୧୦୦ଟି ଡ୍ରିକ୍ ଲିଫ୍ଟ ପ୍ରୋଜେକ୍ଟ ଏବଂ ୫୦ଟି ବଡ଼ ଧରଣର ନଦୀରୁ ପାଣି ଉଠା ପ୍ରକଳ୍ପ କାର୍ଯ୍ୟକାରୀ କରାଯାଇ ୩୦,୦୦୦ ହେକ୍ଟର ଜମିକୁ ଜଳ ଯୋଗାଇ ଦିଆଯିବ । ମୋଟ ବ୍ୟୟ ବରାଦ ୧୨୦ କୋଟି ଟଙ୍କାରୁ କେ: ଏଫ୍: ଡବ୍ଲ୍ୟୁ ସଂସ୍ଥା ୧୦୦ କୋଟି ଟଙ୍କା ଋଣ ଦେବାକୁ ଚୁକ୍ତି କରିଛନ୍ତି ।

### ଗ୍ରାମ୍ୟ ନିର୍ମାଣ :

ଗ୍ରାମାଞ୍ଚଳରେ ସମସ୍ତ ପ୍ରକାର ଉନ୍ନୟନମୂଳକ କାର୍ଯ୍ୟକ୍ରମ ପାଇଁ ଉନ୍ନତ ଯାତାୟତ ସୁବିଧା ଏକ ଅତ୍ୟାବଶ୍ୟକ ଅନ୍ତଃନିର୍ମାଣ ଅଟେ । ୧୯୯୨ ମସିହା ଶେଷ ସୁଦ୍ଧା ଏହି ବିଭାଗ ଅଧୀନସ୍ଥ ଗ୍ରାମ୍ୟ ରାସ୍ତାର ମୋଟ ଦୈର୍ଘ୍ୟ ୨୯,୬୨୯ କିଲୋମିଟର ଥିଲା । ୧୯୯୦-୯୧ ବର୍ଷରେ ୩,୪୧୫-୩୭ ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ୧୫ଟି ସେତୁର କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇଛି । ଏହି ସମୟ ମଧ୍ୟରେ ୫୫ କିଲୋମିଟର ରାସ୍ତାର ପିଚୁକରଣ । ୧୯୫ କିଲୋମିଟର

ରାସ୍ତାରେ ପଥର ବିଛାଇବା ଏବଂ ୯୨୭ କିଲୋମିଟର ରାସ୍ତାରେ ମାଟି କାମ ଏବଂ ଗୋଡ଼ି ବିଛା କାର୍ଯ୍ୟ କରାଯାଇଛି । ଏହାଦ୍ୱାରା ୨୦୦ଟି ଗ୍ରାମକୁ ସବୁଦିନିଆ ରାସ୍ତା ଯୋଗେ ସଂଯୁକ୍ତ କରାଯାଇଛି । ୧୯୯୧-୯୨ ବର୍ଷରେ ୪୦ଟି ସେତୁର କାର୍ଯ୍ୟ ସମାପ୍ତ ହେବା ସହିତ, ୨୫୦ କିଲୋମିଟର ରାସ୍ତା ପଥର ବିଛାଯାଇଛି । ଏହି ବର୍ଷରେ ୮୦ କିଲୋମିଟର ରାସ୍ତା ପିଚୁ କରାଯାଇଛି ଏବଂ ୩୦୦ କିଲୋମିଟର ରାସ୍ତାର ମାଟି କାମ ହୋଇ ଗୋଡ଼ି ବିଛାଯାଇଛି । ଏହାଦ୍ୱାରା ୪୯୬ଟି ଗ୍ରାମକୁ ସବୁଦିନିଆ ରାସ୍ତା ଦ୍ୱାରା ସଂଯୋଗ କରାଯାଇଛି ।

ଏତଦ୍ ବ୍ୟତୀତ ଗ୍ରାମାଞ୍ଚଳରେ ଥିବା ବହୁ ସଂଖ୍ୟକ ସରକାରୀ କୋଠାବାଡ଼ିର ବିଶେଷ ମରାମତି ଏବଂ ରକ୍ଷଣାବେକ୍ଷଣ କାର୍ଯ୍ୟ ହାତକୁ ନିଆଯାଇଛି ।

## ଗ୍ରାମ୍ୟ ଜଳ ଯୋଗାଣ ଏବଂ ପରିମଳ :

ଜୀବନଧାରଣ ପାଇଁ ଜଳ ଏକ ମୌଳିକ ଆବଶ୍ୟକତା ହୋଇଥିବାରୁ ଗ୍ରାମାଞ୍ଚଳର ଲୋକମାନଙ୍କୁ ପାନୀୟ ଜଳ ଯୋଗାଇଦେବା ଉପରେ ବିଶେଷ ଧ୍ୟାନ ଦିଆଯିବା ଦରକାର । ଅଷ୍ଟମ ଯୋଜନାକାଳରେ ପ୍ରତ୍ୟେକ ଲୋକଙ୍କୁ ୪୦ ଆଇ.ପି.ସି.ଡି. ପାନୀୟ ଜଳ ଯୋଗାଇ ଦେବାର ବ୍ୟବସ୍ଥା ଅଛି । ୧୯୮୯-୯୦ ମସିହା ସୁଦ୍ଧା ଦେଶର ଏକ ପଞ୍ଚମାଂଶ ଜଳ ଉତ୍ସ ବିହୀନ ଗ୍ରାମ କେବଳ ଓଡ଼ିଶାରେ ଥିଲା । ୧୯୮୧ ଜନଗଣନା ଅନୁଯାୟୀ ୪୬,୭୩୩ଟି ଆବାସିକ ରାଜସ୍ୱ ଗ୍ରାମ ମଧ୍ୟରୁ ୪୨,୬୬୧ଟି ଗ୍ରାମକୁ ଜଳ କ୍ଳିଷ୍ଟ ଗ୍ରାମ ଭାବେ ଚିହ୍ନଟ କରାଯାଇଛି । ସପ୍ତମ ଯୋଜନାକାଳ ଶେଷ ସୁଦ୍ଧା ୪୦,୯୦୧ଟି ଜଳ କ୍ଳିଷ୍ଟ ଗ୍ରାମକୁ ସମ୍ପୂର୍ଣ୍ଣ ବା ଆଂଶିକଭାବେ ଜଳ ଯୋଗାଇ ଦିଆଯାଇଥିଲା । ୧-୪-୧୯୯୦ ସୁଦ୍ଧା ବଳକା ରହିଥିବା ୧,୩୭୦ ଗ୍ରାମ ମଧ୍ୟରୁ ୧୯୯୦-୯୧ ଏବଂ ୧୯୯୧-୯୨ ଦୁଇଟି ବାର୍ଷିକ ଯୋଜନାରେ ୭୬୧ଟି କଠିନସ୍ତର ଜଳ ଉତ୍ସ ବିହୀନ ଗ୍ରାମକୁ ପାନୀୟ ଜଳ ଯୋଗାଇ ଦିଆଯାଇଅଛି । ସୁତରାଂ, ଅଷ୍ଟମ ଯୋଜନା ଆରମ୍ଭ ବେଳକୁ ତଥାପି ବାକି ରହିଥିବା ୫୫୯ଟି କଠିନସ୍ତର ଜଳକ୍ଳିଷ୍ଟ ଗ୍ରାମକୁ ଚଳିତ ବର୍ଷ ସମ୍ପୂର୍ଣ୍ଣରୂପେ ଜଳ ଯୋଗାଇ ଦିଆଯିବ । ଏତଦ୍ ବ୍ୟତୀତ ୧-୪-୧୯୯୩ ସୁଦ୍ଧା ୧୨୮୪ଟି ଆଂଶିକ ଜଳକ୍ଳିଷ୍ଟ ଗ୍ରାମକୁ ମଧ୍ୟ ଜଳ ଯୋଗାଇ ଦିଆଯିବ । ୧୯୯୦ ମସିହା ବେଳକୁ ସମଗ୍ର ଗ୍ରାମାଞ୍ଚଳରେ କେବଳ ୬୦ଟି ପାଇପ୍ ଜଳ ଯୋଗାଣ ପ୍ରକଳ୍ପଥିଲା । କିନ୍ତୁ ବର୍ତ୍ତମାନ ୧୩୭ ଚାଲୁରହିଥିବା ପ୍ରକଳ୍ପର କାର୍ଯ୍ୟ ମଧ୍ୟରୁ ୬ଟିର କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଛି । ଜୁନ୍ ୧୯୯୩ ସୁଦ୍ଧା ୬୦ଟି ପାଇପ୍ ଜଳ ଯୋଗାଣ ପ୍ରକଳ୍ପର କାର୍ଯ୍ୟ ଶେଷ କରାଯିବାର ଯୋଜନାଅଛି । ଅଷ୍ଟମ ଯୋଜନାକାଳ ଶେଷ ସୁଦ୍ଧା ରାଜ୍ୟର ୭୦ ଶତାଂଶ ଗ୍ରାମ୍ୟ ଲୋକଙ୍କୁ ପାଇପ୍ ଯୋଗେ ପାନୀୟ ଜଳ ଯୋଗାଇ ଦେବାର ଲକ୍ଷ୍ୟ ଧାର୍ଯ୍ୟ ହୋଇଛି ଏବଂ ୮୦୦ ଅନୁସୂଚୀତ ଜାତି ଏବଂ ଜନଜାତି ବସତି ଥିବା ଗ୍ରାମକୁ ପାନୀୟ ଜଳ ଯୋଗାଣର ସୁବିଧା କରାଯାଇଛି । ୧୯୯୩-୯୪ ବର୍ଷରେ ୨୨୮୦ଟି ନଳକୂପ ଏବଂ ୧୪୪ଟି ପରିମଳ କୂପ ସ୍ଥାପନ କରାଯିବାର ଯୋଜନା ଅଛି । ଏତଦ୍‌ବ୍ୟତୀତ ୯୬ଟି ପ୍ରକଳ୍ପର କାର୍ଯ୍ୟ ଚାଲୁରହିଅଛି ଏବଂ ୯୧ଟି ନୂତନ ପାଇପ୍ ଜଳ ଯୋଗାଣ ପ୍ରକଳ୍ପ ହାତକୁ ନିଆଯିବାର ଯୋଜନାଅଛି ।

ଗ୍ରାମ୍ୟ ଜଳ ଯୋଗାଣ ସଂସ୍ଥା ଦ୍ୱାରା ଗ୍ରାମାଞ୍ଚଳରେ ହସ୍ତ ଚାଳିତ ନଳକୂପର ରକ୍ଷଣାବେକ୍ଷଣ ପାଇଁ ତ୍ରୀଜିମ ପ୍ରଶିକ୍ଷଣ ମାଧ୍ୟମରେ ତାଲିମ ଦେବାପାଇଁ ସରକାରଙ୍କର ପ୍ରସ୍ତାବ ଅଛି । ଉକ୍ତ ପ୍ରଶିକ୍ଷଣ ପାଇଁ ବ୍ଳକ ଉନ୍ନୟନ ଅଧିକାରୀ, ସ୍ଥାନୀୟ ହସ୍ତଶିଳ୍ପୀ ବା କାରିଗର ବା ଆଇ: ଟି: ଆଇ: ଶିକ୍ଷାପ୍ରାପ୍ତ ଯୁବକମାନଙ୍କୁ ମନୋନୀତ କରିବେ ।

## ଗ୍ରାମ୍ୟ ପରିମଳ କାର୍ଯ୍ୟକ୍ରମ :

ରାଜ୍ୟରେ ପ୍ରଥମଥର ପାଇଁ ଗ୍ରାମ୍ୟ ପରିମଳ ଯୋଜନା ବୃହଦାକାରରେ କାର୍ଯ୍ୟକାରୀ କରାଯାଇ ସାମୂହିକ ପାଇଖାନା ଏବଂ ବ୍ୟକ୍ତିଗତ ଘରୋଇ ପାଇଖାନା ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି । ଗ୍ରାମାଞ୍ଚଳରେ ୧୭ଟି ସୁଲଭ ଶୌଚାଳୟ ଖୋଲାଯାଇଛି ଏବଂ ଆଉ ୨୬ଟି ଶୌଚାଳୟର କାର୍ଯ୍ୟ ଏହି ବର୍ଷ ହାତକୁ ନିଆଯାଇଛି ।

ପୁରାତନ ଗ୍ରାମ ଇଂଜିନିୟରିଂ ସଂସ୍ଥା ଏବଂ ବର୍ତ୍ତମାନର ଗ୍ରାମ୍ୟ ଉନ୍ନୟନ ବିଭାଗର ଜନ୍ମ ଏବଂ ପୁନର୍ଜୀବନ ସମ୍ପୂର୍ଣ୍ଣଭାବେ ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁପଟ୍ଟନାୟକଙ୍କର ଏକ ମହନୀୟ ଅବଦାନ ଏବଂ ତାଙ୍କର ପୃଷ୍ଠ ପୋଷକତା ଏବଂ ସୁପରାମର୍ଶ ଫଳରେ ଗ୍ରାମ୍ୟ ଉନ୍ନୟନ ବିଭାଗର ପ୍ରଗତି ଉତ୍ତରୋତ୍ତର ସମୃଦ୍ଧି ଲାଭ କରିବ, ଏହା ନିସନ୍ଦେହରେ କୁହାଯାଇପାରେ ।

ଗ୍ରାମ୍ୟ ଉନ୍ନୟନର ମାନଦଣ୍ଡ କୃଷକର ଉନ୍ନତି । କୃଷକ କୃଷି ଉପରେ ନିର୍ଭର କରେ ଏବଂ କୃଷିର ଉନ୍ନତି ଜଳସେଚନ ନିର୍ଭରଶୀଳ । ଗ୍ରାମ୍ୟ ଉନ୍ନୟନ ବିଭାଗ ଗ୍ରାମାଞ୍ଚଳରେ କ୍ଷୁଦ୍ର ଜଳସେଚନ ଓ ଉଠା ଜଳସେଚନ ପ୍ରକଳ୍ପ ମାଧ୍ୟମରେ ଏହି ଉନ୍ନୟନର ସମ୍ଭାବନାକୁ ଏକ ବୈପ୍ଳବିକ ପଦକ୍ଷେପ ଭାବେ ଗ୍ରହଣ କରିଅଛି । ଆଶା ଓ ବିଶ୍ୱାସ, ଏହି ପ୍ରଚେଷ୍ଟା ସଫଳ ହେବ ଏବଂ ଏହାର ସୁଫଳ କୃଷକମାନଙ୍କର ସାମୂହିକ ପ୍ରଗତିର ଦ୍ୱାର ଉନ୍ମୁକ୍ତ କରିବ ।

---

ଶାସନ ସଚିବ,
ଗ୍ରାମ୍ୟ ଉନ୍ନୟନ ବିଭାଗ, ଓଡ଼ିଶା ।

# ସୂଚନା ଗ୍ରନ୍ଥ

* ଡଃ ରାଧାଗୋବିନ୍ଦ ଦାସ

ଜ୍ଞାନ ଆହରଣ ପାଇଁ ଆମ୍ଭେମାନେ ଅଧ୍ୟୟନ କରୁ। ଅଧ୍ୟୟନର ପରିସମାପ୍ତି ନାହିଁ। ଜ୍ଞାନର ମଧ୍ୟ ଶେଷ ନାହିଁ। ଆମ୍ଭେମାନେ ସାହିତ୍ୟ, ଦର୍ଶନ, ଇତିହାସ, ଭୂଗୋଳ, ବିଜ୍ଞାନ ଓ ଅନ୍ୟ ସମ୍ବନ୍ଧୀୟ ଅନେକ ଗ୍ରନ୍ଥ ଅଧ୍ୟୟନ କରିଥାଉଁ। ଗୋଟିଏ ଗ୍ରନ୍ଥ ଅଧ୍ୟୟନ କରୁ କରୁ ଅନେକ ଗ୍ରନ୍ଥ ପାଠର ଅନୁଭୂତ ହୁଏ। ପ୍ରବନ୍ଧ କବିତାଦି ଅଧ୍ୟୟନ କଲେ ଜଟିଳ ଶବ୍ଦମାନଙ୍କର ଅର୍ଥ ଜାଣିବା ପାଇଁ ଅଭିଧାନ ଆବଶ୍ୟକ। କୌଣସି ଏକ ବୈଜ୍ଞାନିକ ଉଦ୍ଭାବନ ବିଷୟରେ ସମ୍ୟକ ଜ୍ଞାନ ଲାଭ ପାଇଁ ବିଶ୍ୱକୋଷର ମଧ୍ୟ ପ୍ରୟୋଜନ। କୌଣସି ଏକ ଦେଶର ଭୌଗଳିକ ବିବରଣୀ ଜାଣିବା ପାଇଁ ଗେଜେଟିଅର, ମାନଚିତ୍ର ଇତ୍ୟାଦି ଦରକାର ହୁଏ। ଅଭିଧାନ, ଭାଷା ବା ଶବ୍ଦ କୋଷ, ଜ୍ଞାନ ବା ବିଶ୍ୱ କୋଷ, ଗେଜେଟିଅର ପଞ୍ଜିକା, ଚରିତ କୋଷ, ମାନଚିତ୍ର ମାଳା, ଗ୍ରନ୍ଥ ପଞ୍ଜି ପ୍ରଭୃତିରୁ ଆମ୍ଭେମାନେ ଆବଶ୍ୟକୀୟ ସୂଚନା ପାଉଥିବାରୁ ଏମାନଙ୍କୁ ସହାୟକ ବା ସୂଚନା ଗ୍ରନ୍ଥ କୁହାଯାଏ। ଅନ୍ୟଗ୍ରନ୍ଥମାନଙ୍କ ପରି ଏହି ଗ୍ରନ୍ଥମାନଙ୍କୁ କେହି ଆମୂଳଚୂଳ ପାଠ କରନ୍ତି ନାହିଁ। ଅଧିକନ୍ତୁ ଅନ୍ୟଗ୍ରନ୍ଥ ଯଥା ଉପନ୍ୟାସ ପ୍ରବନ୍ଧ, କାବ୍ୟ କବିତା ପ୍ରଭୃତି ଥରେ ଶେଷ କଲେ ପ୍ରାୟ ଦ୍ୱିତୀୟଥର ଅଧ୍ୟୟନର ଆବଶ୍ୟକତା ନ ଥାଏ। ତେବେ ଛାତ୍ରମାନଙ୍କ କଥା ପୃଥକ, ପରୀକ୍ଷା ପାଇଁ ଅନୁମୋଦିତ ପାଠ୍ୟପୁସ୍ତକ ସେମାନେ ବାରମ୍ବାର ପଢ଼ିବା ଦରକାର। କିନ୍ତୁ ସହାୟକ ଗ୍ରନ୍ଥର ଆବଶ୍ୟକତା ସଦା ସର୍ବଦା ଲାଗି ରହିଥାଏ। ଅଧ୍ୟୟନ ବା ଗବେଷଣା କରୁ କରୁ ଆମ୍ଭେମାନେ ନୂତନ ତଥା ଜଟିଳ ଶବ୍ଦମାନଙ୍କ ସମ୍ପର୍କରେ ବାରମ୍ବାର ଆସିଥାଉ। ତେଣୁ ଥରକୁ ଥର ଅଭିଧାନର ପୃଷ୍ଠା ଲେଉଟିବାକୁ ପଡ଼ିଥାଏ। ସବୁ ଶବ୍ଦର ବନାନମଧ୍ୟ ଆମ୍ଭେମାନେ ଅନେକ ସମୟରେ ସ୍ମରଣ କରି ନପାରୁ। ଅଭିଧାନରୁ ବନାନ ଦେଖି ସନ୍ଦେହ ଦୂର କରି ଦେବା ଆବଶ୍ୟକ ହୁଏ। ଓଡ଼ିଆ ଜ୍ଞାନ କୋଷର ଆବଶ୍ୟକତା ଓ ଆଦର ଧୀରେ ଧୀରେ ସବୁ ଦେଶରେ ବୃଦ୍ଧି ପାଉଛି। ସାମାନ୍ୟ ପ୍ରାପ୍ତି ଆଶାରେ ବିରାଟ ଗ୍ରନ୍ଥ ଆମୂଳ ଚୂଳ ଅଧ୍ୟୟନ କରିବା କାହାରି ପକ୍ଷେ ସମ୍ଭବ ନୁହେଁ। ସେହି ସୂଚନା ବା ସମ୍ୟକ ଜ୍ଞାନ ଅନାୟାସରେ ଜ୍ଞାନ କୋଷରୁ ଲାଭ କରି ହୁଏ। ସାଧାରଣ ଜ୍ଞାନ କୋଷମାନଙ୍କରେ ଆମ୍ଭେମାନେ ପ୍ରତ୍ୟେକ ବିଷୟର ସମ୍ୟକ ଆଲୋଚନା ପାଇଁ ଆଧାର ପାଇବା ସ୍ଥଳେ ଅନେକ ଜ୍ଞାନ କୋଷ ଆମ୍ଭମାନଙ୍କୁ ନିର୍ଦ୍ଦିଷ୍ଟ ବିଷୟରେ ସୂଚନା ପ୍ରଦାନ କରିଥାନ୍ତି। ଏହି ଶ୍ରେଣୀ ଜ୍ଞାନ କୋଷମାନଙ୍କୁ ଇଂରାଜୀରେ Subject Encyclopaedia କୁହାଯାଏ। ଅନେକ ଜ୍ଞାନ କୋଷ ମିଳୁଛି। କିଶୋରମାନଙ୍କ ପାଇଁ ଉଦ୍ଦିଷ୍ଟ। ଭୌଗଳିକ ବିବରଣୀ ଜାଣିବା ପାଇଁ ଭୂଗୋଳ ବହି ଯଥେଷ୍ଟ ନୁହେଁ। ଅନେକ ବିଲୁପ୍ତ ଐତିହାସିକ ସହର ଯାହାର ନାମ ଭୂଗୋଳ ବହିରେ ନଥାଏ।

ବର୍ତ୍ତମାନର ସମୃଦ୍ଧ ଲୋକାଳୟ ଐତିହାସିକ ତଥ୍ୟ ଅବସ୍ଥିତ ପ୍ରଭୃତି ଗେଜେଟିଅରରୁ ଜାଣିହୁଏ। ଇଂରେଜ ଅମଳରେ **Imperial Gazetteer of India** ମୁଦ୍ରିତ ହେବା ସଙ୍ଗେ ସଙ୍ଗେ ଜିଲ୍ଲାଓ୍ୱାରୀ ଗେଜେଟିଅରମାନ ପ୍ରକାଶିତ ହୋଇଥିଲା। ସ୍ୱାଧୀନତା ପରେ ଓଡ଼ିଶାର ଜିଲ୍ଲାଓ୍ୱାରୀ ଗେଜେଟିଅର ସମ୍ପାଦନା ଆରମ୍ଭ ହୋଇ ପ୍ରାୟ ଶେଷ ହେବା ଉପରେ। ତେବେ କେବଳ ଢେଙ୍କାନାଳ ଜିଲ୍ଲାର ଗେଜେଟିଅର ଓଡ଼ିଶାରେ ମୁଦ୍ରିତ ହୋଇଛି ଓ ଅନ୍ୟ ଜିଲ୍ଲାମାନଙ୍କ ସମ୍ବନ୍ଧରେ ଇଂରାଜୀରେ ପ୍ରକାଶିତ ହୋଇଛି। ମାନଚିତ୍ର, ଗ୍ଲୋବ ଓ ଆଟ୍‌ଲାସ ପ୍ରଭୃତି ମଧ୍ୟ ଭୌଗଳିକ ସୂଚନା ପ୍ରଦାନ କରିଥାନ୍ତି। ଭ୍ରମଣ କାରୀଙ୍କ ସୁବିଧା ନିମନ୍ତେ ଇଂରାଜୀରେ (Tourist Guide) ମିଳିଥାଏ। ରେଳ ସଡ଼କ ପରିବହନ ତଥା ବିମାନ ଯାତ୍ରୀମାନଙ୍କ ପାଇଁ ସମୟ ନିର୍ଘଣ୍ଟ (Time table) ଅତ୍ୟନ୍ତ ଉପକାରୀ। Time tableରେ ଆମ୍ଭେମାନେ ସ୍ଥାନମାନଙ୍କର ଦୂରତ୍ୱ, ପରିବହନ ବ୍ୟବସ୍ଥା, ଯାତାୟତ ସମୟ ଓ ମହାସୁଲ ସମ୍ବନ୍ଧରେ ଜାଣି ପାରୁ। ପର୍ଯ୍ୟଟକମାନଙ୍କର ସୁବିଧା ପାଇଁ ପ୍ରତି ଦର୍ଶନୀୟ ସ୍ଥାନ ସମ୍ପର୍କରେ ସଂକ୍ଷିପ୍ତ ଟିପ୍ପଣୀ ପର୍ଯ୍ୟଟନ ସାଥୀ ପୁସ୍ତକମାନଙ୍କରୁ ମିଳିଥାଏ। ଭ୍ରମଣ କାହାଣୀ ପଢ଼ି ସ୍ଥାନମାନଙ୍କ ସମ୍ବନ୍ଧରେ ଜାଣିବା ଅପେକ୍ଷା ଏହିସବୁ ଗ୍ରନ୍ଥରୁ ଆବଶ୍ୟକୀୟ ସୂଚନା ସହଜରେ ଉପଲବ୍ଧି କରି ହୋଇଥାଏ।

ପଞ୍ଜିକାରୁ ଆମ୍ଭେମାନେ ସମଗ୍ର ବର୍ଷର ଦୈନନ୍ଦିନ ଗ୍ରହ ଓ ନିହାରିକା ସୂଚନା ପାଇବା ସଙ୍ଗେ ସଙ୍ଗେ ପର୍ବ ପର୍ବାଣୀ ତିଥି ସମ୍ବନ୍ଧରେ ଧାରଣା କରିପାରୁ। ଓଡ଼ିଆ ତଥା ଅନ୍ୟ ଭାଷାର ପଞ୍ଜିକାମାନଙ୍କରୁ ତିଥି, ରାଶି, ପର୍ବ ପର୍ବାଣୀ, ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ, ଶୁଭଦିନ ଓ ଗ୍ରହ ନକ୍ଷେତ୍ରମାନଙ୍କର ଅବସ୍ଥିତି ଓ ଭୋଗ ପ୍ରଭୃତି ସୂଚନା ସହିତ ଆହୁରି ଅନେକ ଆବଶ୍ୟକୀୟ ତଥ୍ୟ ମିଳିଥାଏ। ଓଡ଼ିଆ ପଞ୍ଜିକାରେ ଅଦାଲତ ତଥା ଛୁଟି ତାଲିକା, ଡାକ ମହାସୁଲ ପ୍ରହର ପ୍ରଭୃତି ଦିଆଯାଇଥାଏ। ଭାରତ ସରକାରଙ୍କ ଦ୍ୱାରା ପ୍ରକାଶିତ ରାଷ୍ଟ୍ରୀୟ ପଞ୍ଚାଙ୍ଗ ଏକ ବିଶୁଦ୍ଧ ପଞ୍ଜିକା। ଓଡ଼ିଶାରେ ପ୍ରକାଶିତ ପଞ୍ଜିକାମାନଙ୍କରେ ମୁଦ୍ରଣ ଜନିତ ତ୍ରୁଟି ଅନେକ ସମୟରେ ପରିଲକ୍ଷିତ ହୁଏ। ଇଂରାଜୀରେ ପ୍ରକାଶିତ ବାର୍ଷିକ ଗ୍ରନ୍ଥ (Year Book)ମାନଙ୍କରୁ ସାରାବର୍ଷର ସଂକ୍ଷିପ୍ତ

ବିବରଣୀ ସହିତ ଅନେକ କିଛି ଜ୍ଞାତବ୍ୟ ବିଷୟ ମିଳିଥାଏ । ତେବେ ଭାରତୀୟ ଭାଷାମାନଙ୍କରେ ଉତ୍କୃଷ୍ଟ ବାର୍ଷିକ ଗ୍ରନ୍ଥ ପ୍ରକାଶ ପାଉନାହିଁ କହିଲେ ଚଳେ । ତେଣୁ ପାଠକମାନଙ୍କ Hindustan Year Book, Statesman Year Book ପ୍ରଭୃତି ଇଂରାଜୀ Year Bookମାନଙ୍କ ଉପରେ ନିର୍ଭର କରିବାକୁ ପଡ଼ିଥାଏ । ଭାରତ ସରକାର ପ୍ରତିବର୍ଷ "India" ନାମକ ବାର୍ଷିକ ଗ୍ରନ୍ଥ ପ୍ରକାଶ କରିଥାନ୍ତି । ଏହା ଏକ ଉତ୍କୃଷ୍ଟ ସୂଚନା ଗ୍ରନ୍ଥ । ପରିସଂଖ୍ୟାନ ବା ସେହି ଭଳି ବିଶେଷ ସଂସ୍ଥାମାନେ ମଧ୍ୟ ପ୍ରତିବର୍ଷ ଇଂରାଜୀରେ ବାର୍ଷିକ ଗ୍ରନ୍ଥ ପ୍ରକାଶ କରିଥାନ୍ତି । ସେଗୁଡ଼ିକ କେବଳ ବିଶେଷଜ୍ଞମାନଙ୍କ ବ୍ୟବହାର ଆସିଥାଏ ।

ଜୀବନୀ ଅଭିଧାନ ବା ଚରିତ କୋଷ ମଧ୍ୟ ଅତ୍ୟାବଶ୍ୟକୀୟ ସହାୟକ ଗ୍ରନ୍ଥ । ପ୍ରତିଭାବାନ ବ୍ୟକ୍ତିମାନଙ୍କ ଜୀବନୀ ଆମମାନଙ୍କୁ ସବୁବେଳେ ଅନୁପ୍ରାଣିତ କରେ । ସେମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଆମ୍ଭେମାନେ ନିଜକୁ ସତ୍ ମାର୍ଗରେ ଚଳାଇବାକୁ ଚେଷ୍ଟା କରୁ । ଏଣୁ ସାଧୁ, ସନ୍ଥ, କବି, ଲେଖକ, ବୈଜ୍ଞାନିକ, ଶିକ୍ଷାବିତ, ସଂସ୍କାରକ, ରାଜନୀତିଜ୍ଞ ତଥା ଦେଶଭକ୍ତମାନଙ୍କର ଜୀବନୀ ପାଠ କରିବାକୁ ସମସ୍ତେ ଆଗ୍ରହୀ । କିନ୍ତୁ ବିରାଟକାୟ ଜୀବନୀ ଗ୍ରନ୍ଥ ପାଠ କରିବା ଅତ୍ୟନ୍ତ ସମୟସାପେକ୍ଷ । ଅନେକ ସମୟରେ ଆମ୍ଭେମାନେ କୌଣସି ବ୍ୟକ୍ତିଙ୍କର ଜନ୍ମମୃତ୍ୟୁ ଓ ସଂକ୍ଷିପ୍ତ ଜୀବନୀ ଜାଣିବାକୁ ଇଚ୍ଛା କରୁ । ଯେପରି ସ୍ଥଳେ ବିରାଟ ଜୀବନୀ ଗ୍ରନ୍ଥ ବା ଆପଚରିତ କୋଷରେ ଆମ୍ଭେମାନେ ସଂକ୍ଷେପରେ ବ୍ୟକ୍ତି ବିଶେଷଙ୍କର ଜୀବନୀ ସମ୍ବନ୍ଧୀୟ ସୂଚନା ପାଇଥାଉଁ । ଇଂରାଜୀ ଭାଷାରେ ଅନେକ 'Who's Who ପ୍ରକାଶିତ ହୋଇଛି ଓ ହେଉଛି । ଭାରତରେ 'Dictionary of National Bibliogrophy ଏକ ଉପାଦେୟ ଜୀବନୀ କୋଷ ଆଞ୍ଚଳିକ ଭାଷାମାନଙ୍କରେ ମଧ୍ୟ ଚରିତ କୋଷମାନ ପ୍ରକାଶିତ ହୋଇଛି । ବର୍ଣ୍ଣାନୁକ୍ରମରେ ବ୍ୟକ୍ତି ବିଶେଷମାନଙ୍କର ସଂକ୍ଷିପ୍ତ ଜୀବନୀ ପ୍ରଦତ୍ତ ହୋଇ ଥିବାରୁ ଏହି ଅଭିଧାନମାନଙ୍କରୁ ଅଳ୍ପକ୍ଷଣରେ ସେମାନଙ୍କର ଜୀବନ ସମ୍ବନ୍ଧୀୟ ସୂଚନା ମିଳିଥାଏ ।

ସୂଚିକା (Directory) ମଧ୍ୟ ଏକ ସହାୟକ ଗ୍ରନ୍ଥ । ଏଥିରୁ ପ୍ରତିଷ୍ଠାନ, ଅନୁଷ୍ଠାନ ପ୍ରଭୃତିର ଅବସ୍ଥିତି ଓ ଠିକଣା ଜଣାଯାଏ । ବ୍ୟକ୍ତିବିଶେଷଙ୍କର ଠିକଣା ପ୍ରଭୃତି ମଧ୍ୟ Directoryରେ ପ୍ରଦତ୍ତ ହୋଇଥାଏ । ଆନ୍ତର୍ଜାତୀୟ, ଜାତୀୟ ଏବଂ ଆଞ୍ଚଳିକ ସ୍ତରରେ Directory of Book Sellors and Publishers in India, Thacker's Directory ପ୍ରଭୃତି ଅନେକ Directory ଇଂରାଜୀରେ ଆମ ଦେଶରେ ପ୍ରକାଶିତ ହୋଇଛି । ଆଞ୍ଚଳିକ ଭାଷା ତଥା ଓଡ଼ିଆରେ Directoryର ବିଶେଷ ଚାହିଦା ନ ଥିବାରୁ ବୋଧ ହୁଏ ଏ ଦିଗରେ ଉଦ୍ୟମ ହୋଇ ନାହିଁ ।

ଏପରିକି ଟେଲିଫୋନ୍ Directory ମଧ୍ୟ ଓଡ଼ିଆରେ ମୁଦ୍ରିତ ହୋଇନାହିଁ ।

Hand Book ଓ Manual ମଧ୍ୟ ସୂଚନା ପ୍ରଦାୟକ ଗ୍ରନ୍ଥ । କୌଣସି ଏକ ପ୍ରତିଷ୍ଠାନ ବା ଅନୁଷ୍ଠାନ ସମ୍ବନ୍ଧୀୟ ସୂଚନା Hand Bookମାନଙ୍କରୁ ମିଳିଥାଏ । ଯେପରି Hand Book of Universities in Indiaରୁ ଭାରତୀୟ ବିଶ୍ୱବିଦ୍ୟାଳୟମାନଙ୍କ ସମ୍ବନ୍ଧରେ ସୂଚନା ଦିଆଯାଇ ଥାଏ । ପ୍ରତ୍ୟେକ ବିଷୟର ସଂକ୍ଷିପ୍ତ ସହାୟକ ଗ୍ରନ୍ଥକୁ Manual କୁହାଯାଏ । Manual of Agriculture ବା Manual of Tailoring ଇତ୍ୟାଦି । ତେବେ Manualଗୁଡ଼ିକ ସାଧାରଣତଃ ନିର୍ଦ୍ଦିଷ୍ଟ ବିଷୟରେ ହୋଇ ଥିବାରୁ ତାହା ସବୁ ଶ୍ରେଣୀର ପାଠକଙ୍କ ଉପଯୋଗୀ ନୁହେଁ । ଗୃହ ବିଜ୍ଞାନ ଗୃହିଣୀ ସହଚର ବା ଗୃହଲକ୍ଷ୍ମୀ ପ୍ରଭୃତି ପୁସ୍ତକ ଗୃହିଣୀମାନଙ୍କ ପାଇଁ କେବଳ ଉପଯୋଗୀ । ସେହିପରି ହଂସ, ବତକ, କୁକୁଡ଼ ପାଳନ ସଚିତ୍ର ସିଲାଇ ଶିକ୍ଷା ପ୍ରଭୃତି ବ୍ୟକ୍ତି ବିଶେଷଙ୍କ ପାଇଁ ଉଦ୍ଦିଷ୍ଟ ।

ଗ୍ରନ୍ଥ ପ୍ରକାଶନ ଯେପରି ଦ୍ରୁତ ଗତିରେ ବୃଦ୍ଧି ପାଉଛି ସେହିପରି ଗ୍ରନ୍ଥର ଚାହିଦା ମଧ୍ୟ କ୍ରମଶଃ ଅଧିକ ହେଉଛି । ପ୍ରତି ସେକେଣ୍ଡରେ ୭୫ ଖଣ୍ଡ ଗ୍ରନ୍ଥ ପ୍ରକାଶିତ ହେଉଥିବା ବେଳେ ସବୁ ଗ୍ରନ୍ଥ ସମ୍ବନ୍ଧରେ ଧାରଣା କରିବା ଆଦୌ ସମ୍ଭବ ନୁହେଁ । ତେଣୁ ଜାତୀୟ ସ୍ତରରେ ତଥା ଭାଷା ଭିତ୍ତିରେ ଗ୍ରନ୍ଥ ପଞ୍ଜିମାନେ ପ୍ରସ୍ତୁତ ହୋଇ ଗବେଷକମାନଙ୍କୁ ସାହାଯ୍ୟ କରାଯାଉଛି । ଜାତୀୟ ସ୍ତରରେ ପ୍ରକାଶିତ ଗ୍ରନ୍ଥମାନଙ୍କର ତାଲିକାକୁ ଜାତୀୟ ଗ୍ରନ୍ଥ ପଞ୍ଜି କୁହାଯାଏ । ସେହିପରି ନିର୍ଦ୍ଦିଷ୍ଟ ଭାଷାରେ ପ୍ରକାଶିତ ସମସ୍ତ ଗ୍ରନ୍ଥମାନଙ୍କର ତାଲିକାକୁ ଭାଷା ଗ୍ରନ୍ଥ ପଞ୍ଜି କୁହାଯାଏ । ଓଡ଼ିଆରେ ପ୍ରକାଶିତ ଗ୍ରନ୍ଥମାନଙ୍କର ତାଲିକା ହେଉଛି ଓଡ଼ିଆ ଗ୍ରନ୍ଥ ପଞ୍ଜି । ଗ୍ରନ୍ଥ ପଞ୍ଜିମାନ ପ୍ରତିବର୍ଷ ପ୍ରକାଶିତ ହୁଏ । ଗବେଷକମାନଙ୍କର ଅଧିକ ସୁବିଧା ପାଇଁ ବିଷୟ ଗ୍ରନ୍ଥ ପଞ୍ଜି ବା Subject Bibliography ମଧ୍ୟ ପ୍ରକାଶିତ ହେଉଛି । ନିକଟରେ ଜର୍ମାନ ପଣ୍ଡିତ ଶ୍ରୀ ଏଚ୍. ଏମ୍. କୁଲକେ ଓଡ଼ିଶା ଗ୍ରନ୍ଥ ପଞ୍ଜି ସଂକଳନ କରିଛନ୍ତି । ତେବେ ଏହି ଗ୍ରନ୍ଥଟି ଇଂରାଜୀରେ ମୁଦ୍ରିତ ହୋଇଛି । ଆମ ଜାତୀୟ ଗ୍ରନ୍ଥାଗାରର ଗ୍ରନ୍ଥ ପଞ୍ଜି ବିଭାଗ ପ୍ରତିବର୍ଷ ଜାତୀୟ ଗ୍ରନ୍ଥ ପଞ୍ଜି ପ୍ରକାଶ କରନ୍ତି । ପ୍ରତି ତିନିମାସରେ ଏହାର ତ୍ରୈମାସିକ ସଂଖ୍ୟା ଓ ବର୍ଷ ଶେଷରେ ବାର୍ଷିକ ସଂଖ୍ୟା ପ୍ରକାଶିତ ହୁଏ । ଏହି ଗ୍ରନ୍ଥଟି Indian National Bibliography ନାମରେ ପରିଚିତ । ଏଥିରେ ଭାରତରେ ପ୍ରକାଶିତ ସମସ୍ତ ଗ୍ରନ୍ଥର ତାଲିକା ପ୍ରଦତ୍ତ ହୋଇଥାଏ । ଓଡ଼ିଶା ସାହିତ୍ୟ ଏକାଡେମୀ ସହାୟତାରେ ଶ୍ରୀ ଅବକାଶ ଜେନା କେତେ ବର୍ଷର ଓଡ଼ିଆ ଗ୍ରନ୍ଥ ପଞ୍ଜି ସଂକଳନ କରିଛନ୍ତି । ICSSR ତରଫରୁ ଡଃ ରାଧାଗୋବିନ୍ଦ ଦାସଙ୍କ ଦ୍ୱାରା ସଂକଳିତ ଓଡ଼ିଶା ଗ୍ରନ୍ଥପଞ୍ଜି ଦିଲ୍ଲୀସ୍ଥିତ ରାଷ୍ଟ୍ରୀୟ ସାମାଜିକ ବିଜ୍ଞାନ ପ୍ରଲେଖନ କେନ୍ଦ୍ରରେ ପାଠକମାନଙ୍କ ପାଇଁ ରଖାଯାଇଛି ।

ଗ୍ରନ୍ଥ ପଞ୍ଜିମାନଙ୍କ ଗ୍ରନ୍ଥ ପଞ୍ଜି ଅର୍ଥାତ Bibliography of Bibliographersରୁ ଆମ୍ଭେମାନେ ବିଭିନ୍ନ ଗ୍ରନ୍ଥ ପଞ୍ଜିମାନଙ୍କର ଧାରଣା ପାଇଥାଉ । British National Bibliography ଗ୍ରନ୍ଥ ପଞ୍ଜି କ୍ଷେତ୍ରରେ ସମସ୍ତଙ୍କର ପଥପ୍ରଦର୍ଶକ ।

ଗ୍ରନ୍ଥପଞ୍ଜିଠାରୁ ଗ୍ରନ୍ଥସୂଚୀ ସମ୍ପୂର୍ଣ୍ଣ ପୃଥକ । ଯଦିଓ ଉଭୟ ଗ୍ରନ୍ଥମାନଙ୍କର ତାଲିକା ଓ ସୂଚନା ସମ୍ବଳିତ । ଗ୍ରନ୍ଥ ପଞ୍ଜି ବିଭିନ୍ନ

ପୁସ୍ତକର ତଥା ଭାଷା ଏବଂ ଦେଶର ଗ୍ରନ୍ଥଭିତ୍ତିରେ ସଂକଳିତହୁଏ । ନିର୍ଦ୍ଦିଷ୍ଟ ଗ୍ରନ୍ଥସୂଚୀ (Catalogue) କେବଳ ନିର୍ଦ୍ଦିଷ୍ଟ ଗ୍ରନ୍ଥାଗାର ବା ପୁସ୍ତକ ପ୍ରତିଷ୍ଠାନର ଗ୍ରନ୍ଥ ତାଲିକା ମାତ୍ର । Revenshaw College ଓଡ଼ିଆ Catalogue ଅନେକ ବର୍ଷ ପୂର୍ବେ ମୁଦ୍ରିତ ହୋଇଥିଲା । ବିଭିନ୍ନ ପୁସ୍ତକ ପ୍ରତିଷ୍ଠାନ ମଧ୍ୟ ସେମାନଙ୍କର ପ୍ରକାଶିତ ଗ୍ରନ୍ଥ ସୂଚୀ ଛାପିଥାନ୍ତି । ଏହି ଗ୍ରନ୍ଥ ସୂଚୀ ବା ପୁସ୍ତକ ତାଲିକାପାଇଁ ଆଗେ ଆମ ରାଜ୍ୟର ପୁସ୍ତକ ପ୍ରତିଷ୍ଠାନମାନେ ଅଣେ ଦୁଇ ଅଣା ମୂଲ୍ୟ ଧାର୍ଯ୍ୟ କରୁଥିଲେ । କିନ୍ତୁ ରାଜ୍ୟ ତଥା ଭାରତ ବାହାରର ପୁସ୍ତକ ପ୍ରତିଷ୍ଠାନମାନଙ୍କର ବିରାଟ ବିରାଟ ଗ୍ରନ୍ଥସୂଚୀ (ପୁସ୍ତକ ତାଲିକା) ବିନା ମୂଲ୍ୟରେ ବିଭିନ୍ନ ଗ୍ରନ୍ଥାଗାର ତଥା ବ୍ୟକ୍ତିବିଶେଷମାନଙ୍କ ପାଖକୁ ଡାକରେ ଆସୁଥିବା ଦେଖି ଆଜିକାଲି ଓଡ଼ିଆ ପ୍ରକାଶକମାନେ ଆଉ ପୁସ୍ତକ ତାଲିକା ପାଇଁ ମୂଲ୍ୟଦାବୀ କରୁନାହାନ୍ତି । ବ୍ୟବସାୟ ଗ୍ରନ୍ଥ ସୂଚୀ ବା ପୁସ୍ତକ ତାଲିକାରୁ କୌଣସି ଏକ ନିର୍ଦ୍ଦିଷ୍ଟ ପୁସ୍ତକ ପ୍ରତିଷ୍ଠାନର ପ୍ରକାଶିତ ସମସ୍ତ ପୁସ୍ତକମାନଙ୍କ ତାଲିକା ମିଳିଥାଏ । ଏହାଛଡ଼ା ଗ୍ରନ୍ଥାଗାର Catalogueମାନଙ୍କରୁ ଆମେମାନେ ଗ୍ରନ୍ଥ ଓ ଲେଖକମାନଙ୍କ ନାମ ପ୍ରଭୃତି ଜାଣୁ । ତେଣୁ ଏସବୁ ମଧ୍ୟ ଆମମାନଙ୍କ ପାଇଁ ସହାୟକ ବା ସୂଚନା ଗ୍ରନ୍ଥ । ଓଡ଼ିଶା ମ୍ୟୁଜିୟମ୍‌ରେ ଏବଂ ବିଶ୍ୱଭାରତୀରେ ଗଚ୍ଛିତ ଓଡ଼ିଆ ଏବଂ ସଂସ୍କୃତ ପୋଥିମାନଙ୍କର ସୂଚୀ ପ୍ରସ୍ତୁତ ହୋଇଛି ।

ସରକାରୀ ପ୍ରକାଶନ ଏବଂ ନଥିପତ୍ର ମଧ୍ୟ ସହାୟକ ଗ୍ରନ୍ଥ । ଜନଗଣନା, ବଜେଟ୍, ପରିସଂଖ୍ୟାନ, ଯୋଜନା, ସାଂସ୍କୃତିକ ବ୍ୟାପାର ପ୍ରଭୃତି ବିଭାଗରୁ ପ୍ରକାଶିତ ପୁସ୍ତକାବଳୀ ଅନେକ ସୂଚନା ସମ୍ବଳିତ । ତେଣୁ ଏସବୁ "ସହାୟକ ଗ୍ରନ୍ଥ" ଶ୍ରେଣୀଭୁକ୍ତ । ତେବେ ଦୁଃଖର କଥା ଆମରାଜ୍ୟ ସରକାର ପ୍ରାୟ ଓଡ଼ିଆରେ କିଛି ପ୍ରକାଶ କରନ୍ତି ନାହିଁ । ଯାହା ପ୍ରକାଶ କରନ୍ତି ତାହା ସହାୟକ ଗ୍ରନ୍ଥର ପର୍ଯ୍ୟାୟଭୁକ୍ତ ନୁହେଁ । ଏପର୍ଯ୍ୟନ୍ତ ରାଜ୍ୟସରକାର ଅତ୍ୟଳ୍ପ ଓଡ଼ିଆ ଗ୍ରନ୍ଥ ପ୍ରକାଶ କରି ଅଛନ୍ତି । ଏପରିକି ଭୁବନେଶ୍ୱର, ପୁରୀ, କୋଣାର୍କ ପ୍ରଭୃତି ତୀର୍ଥମାନଙ୍କ ସମ୍ପର୍କରେ ତୀର୍ଥଯାତ୍ରୀମାନଙ୍କ ପାଇଁ ଉଦ୍ଦିଷ୍ଟ ପୁସ୍ତକାବଳୀ ମଧ୍ୟ ଇଂରାଜୀରେ ମୁଦ୍ରିତ ହୋଇଛି । ତେବେ ଇଂରାଜୀରେ ପ୍ରକାଶନ ସପକ୍ଷରେ ଯୁକ୍ତି ହେଉଛି ଯେ ଇଂରାଜୀ ପୁସ୍ତକ ଅଣଓଡ଼ିଆ ପାଠକମାନଙ୍କ ଦ୍ୱାରା ଆଦୃତ ।

ଅବସରପ୍ରାପ୍ତ ଗ୍ରନ୍ଥପାଳ,
ପୋ: ରାଜେନ୍ଦ୍ର ମହାବିଦ୍ୟାଳୟ,
ଜି: ବଲାଙ୍ଗୀର-୭୬୭୦୦୨ ।



ବାରିପଦାଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଚୈତ୍ର ପର୍ବ (ଛଉ ନୃତ୍ୟ ଉତ୍ସବ) ଉଦ୍‌ଘାଟନ କରୁଛନ୍ତି ।

# କବି ଜୟଦେବ ଓ ପ୍ରତ୍ନତତ୍ତ୍ୱ

* ଶ୍ରୀ ଶିଶିରକାନ୍ତ ନନ୍ଦ

ଲିଙ୍ଗରାଜ ମନ୍ଦିରରୁ ମିଳିଥିବା ଅଭିଲେଖରେ ଜୟଦେବଙ୍କ ସମ୍ପର୍କରେ କେତେକ ପ୍ରାମାଣିକ ତଥ୍ୟ ରହିଛି । ତାଙ୍କ ଭକ୍ତିମତ୍ତା ଓ ସାଧୁପ୍ରାଣତାର ପରାକାଷ୍ଠା କାଳ କାଳ ଉଦ୍‌ବୁଦ୍ଧ କରି ଆସିଛି ଓଡ଼ିଶାର ଅଗଣିତ ସାରସ୍ୱତ ସାଧକଙ୍କର ରସ ମାଧୁର୍ଯ୍ୟ ଅନ୍ୱେଷା । ମାଟିର ଗୁହନ ଛନ୍ଦ ଲଳିତ ପଦାବଳୀରେ ସୁରବଦ୍ଧ ହୋଇଛି ତାଙ୍କ ଲେଖନୀରେ । ବିଶ୍ୱର ଏଇ ଅନନ୍ୟ ପ୍ରତିଭା କେନ୍ଦୁଲିରେ ଭୂମିଷ୍ଠ ହୋଇଥିଲେ ମଧ୍ୟ ତାଙ୍କ ଗୀତଗୋବିନ୍ଦ କାଳୋତୀର୍ଣ୍ଣ ।

ଉତ୍କଳର ସନ୍ଥ ସାଧକମାନଙ୍କ ମଧ୍ୟରେ ଦ୍ୱାଦଶ ଶତାବ୍ଦୀର ସାଧକ ଭକ୍ତକବି ଜୟଦେବ ବିଶ୍ୱର ଅନ୍ୟତମ ମହାନ ସଂସ୍କୃତି କବି ଭାବରେ ଚିର ନମସ୍ୟ । ତାଙ୍କର ଭକ୍ତି ସାଧନା ସମଗ୍ର ଭାରତବର୍ଷ କାହିଁକି ସୁଦୂର ଆମେରିକା ଓ ୟୁରୋପ ମହାଦେଶର ଅଗଣିତ ଜନଗଣଙ୍କ ମନରେ ନୂତନ ଚେତନା ଉଦ୍ରେକ କରିଛି । ତାଙ୍କ ରଚିତ ସଂସ୍କୃତ କାବ୍ୟ "ଗୀତ ଗୋବିନ୍ଦ" ସଂସ୍କୃତ ସାହିତ୍ୟ ଭଣ୍ଡାରର ଏକ ଅନବଦ୍ୟ ସମ୍ଭାର ।

ପୁରୀ ଜିଲ୍ଲା ବାଲିଅନ୍ତା ଥାନା ଅନ୍ତର୍ଗତ ପୁଣ୍ୟତୋୟା ପ୍ରାଚୀ ନଦୀ ତୀରରେ କେନ୍ଦୁଲି ଗ୍ରାମ ଅବସ୍ଥିତ । ଅନତିଦୂରରେ କଳକଲ୍ଲୋଳିନୀ କୁଶଭଦ୍ରା ନଦୀ ପ୍ରବାହିତ । କେନ୍ଦୁଲିର ପ୍ରାକୃତିକ ପରିବେଶ ଅତ୍ୟନ୍ତ ଚିତ୍ତାକର୍ଷକ । ଦୂର ଦୂରାନ୍ତରୁ ଆସୁଥିବା ବହୁ ପର୍ଯ୍ୟଟକମାନଙ୍କୁ ଏହା ଆକୃଷ୍ଟ କରିଥାଏ ।

ସ୍ୱର୍ଗତ କେଦାରନାଥ ମହାପାତ୍ର, ସ୍ୱର୍ଗତ ଜଗବନ୍ଧୁ ସିଂହ, ଐତିହାସିକ ନବୀନ କୁମାର ସାହୁ ଓ ପଣ୍ଡିତ ନୀଳମଣି ମିଶ୍ର ଜୟଦେବଙ୍କର ଜନ୍ମସ୍ଥାନକୁ ପୁରୀ ଜିଲ୍ଲା ବାଲିଅନ୍ତା ଥାନା ପ୍ରତାପରୁଦ୍ରପୁର ଗ୍ରାମ ପଞ୍ଚାୟତ ଅନ୍ତର୍ଭୁକ୍ତ ପ୍ରାଚୀ ତୀରବର୍ତ୍ତୀ କେନ୍ଦୁଲି ଗ୍ରାମ ସହିତ ଚିହ୍ନଟ କରିଛନ୍ତି । ପ୍ରତ୍ନତତ୍ତ୍ୱ ଓ ପ୍ରାଚୀନ ଗ୍ରନ୍ଥ ସାହିତ୍ୟକୁ ବିଶ୍ଳେଷଣ କଲେ ଏହା ଆମେ ଜାଣି ପାରିବା । ଉକ୍ତ ପ୍ରବନ୍ଧରେ ଜୟଦେବଙ୍କ ସମ୍ପର୍କରେ ମିଳିଥିବା ଶିଳାଲିପି ଏବଂ ବିଭିନ୍ନ ପ୍ରାଚୀନ ଗ୍ରନ୍ଥ ସାହିତ୍ୟରେ କବିଙ୍କ ସମ୍ପର୍କରେ ଥିବା ତଥ୍ୟର କେତେକ ଆଲୋଚନା କରାଯାଉଛି ।

ଭୁବନେଶ୍ୱରସ୍ଥ ଲିଙ୍ଗରାଜ ମନ୍ଦିରରୁ ମିଳିଥିବା ଏକ ଅଭିଲେଖରେ ଜୟଦେବଙ୍କ ସମ୍ପର୍କରେ କେତେକ ତଥ୍ୟ ରହିଛି । ଏହି ଅଭିଲେଖରେ ଜୟଦେବଙ୍କୁ "ଗୀତ ଗୋବିନ୍ଦ"ର ରଚୟିତାରୂପେ ବର୍ଣ୍ଣନା କରାଯାଇଛି । ଉକ୍ତ ଅଭିଲେଖରେ ଥିବା ତଥ୍ୟକୁ ବିଶ୍ଳେଷଣ କଲେ ଉକ୍ତ କବି ଜୟଦେବ ଓଡ଼ିଶାରେ ଜନ୍ମଗ୍ରହଣ କରିଥିବାର ପ୍ରମାଣ ମିଳେ । ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ ଏହି ଅଭିଲେଖଟିର ପାଠୋଦ୍ଧାର କରିଛନ୍ତି । ସେ ତାଙ୍କ ଦ୍ୱାରା ଲିଖିତ ପୁସ୍ତକ Inscription of Orissa Vol–III Part–II Page 294 ଓ Orissa Historical Research Journal Vol–V Page–180 ରେ ସୂଚି ପ୍ରଦାନ କରିଛନ୍ତି । ଦିନେଶ ଚନ୍ଦ୍ର ସରକାର ମଧ୍ୟ ୧୯୫୫ରେ ଏହି ଅଭିଲେଖର ପାଠୋଦ୍ଧାର କରି ତାଙ୍କ ପୁସ୍ତକ Epigraphica Indica VI. Page-159ରେ ପ୍ରଦାନ କରିଛନ୍ତି । ଅଭିଲେଖଟିର ପାଠ ନିମ୍ନ ମତେ ପ୍ରଦତ୍ତ ହୋଇଛି ।

ଶକ (୧୦୮୪—୫)

ସ୍ୱସ୍ତି ଶ୍ରୀ ରାଘବ ଦେବସ୍ୟ ପ୍ରବର୍ଦ୍ଧମାନ.........

"ସୁ ଦିବଠବାରେ ବୁଦ୍ଧ (ଧୋ) ଶ୍ରୀ କି )କୀ) ର୍ତ୍ତିବା ସେଶ୍ୱରସ୍ୟ ପ୍ରି(ପୀ)ତଯେ ମେଡ଼ମଦେ (ବ୍ୟା)

ଯଦା ଦ୍ୟାବ(ଦେ) ଖଣ୍ଡ (ସ୍ତା) ୟବର୍ତ୍ତି(ର୍ତ୍ତୀ) ସ୍ୟ ମାତାପିତରୋ କୋମିନାସ୍ୱଜନକ୍ତୁ–

ତି(ତ୍ତି) ବାସେସ୍ୱ(ଶ୍ୱ) (ରୋ ପ୍ରୀତଯେ ଦୀପଂଦଦ୍ୟାତା(ତ୍) "କୁକ୍କୁର୍ମ ପାଟକ(ପ୍ରା)ବ–

ର ସାଧୁ ପ୍ରଧାନ ଜୟଦେବ ସମବାୟ ? ଦେବଧର ଗ୍ରାମ ଦାସପୁର ପ୍ରେଠି

ଦତ୍ତାତ୍ ସିତା ବା ହେତ୍ ଖଣ୍ଡ ତେ (ଯୋ)ଗ ସର୍ବ କୀର୍ତ୍ତିବାସେ ସ୍ୱ(ଶ୍ୱ) ରାୟ ଧୀ(ଲୋ)"

କିନ୍ତୁ ଲକ୍ଷ୍ମଣସେନଙ୍କର ସଭାଭାବନ ଦ୍ୱାରା ଦେଶରେ ଥିବା ପ୍ରସ୍ତର ଫଳକରେ–

"ଗୋବର୍ଦ୍ଧନଶ୍ଚ ଶରଣୋ ଜୟଦେବ ଉମାପତି

କବିରାଜଶ୍ଚ ରତ୍ନାନି ସମିତୌ ଲକ୍ଷ୍ମଣସ୍ୟଚ ।"

ଲିଖିତ ଥିବା ଶ୍ରୀରୂପ ସନାତନ ଗୋସ୍ୱାମୀ ଦେଖିଥିବାର ଉଲ୍ଲେଖ ଅଛି । ସେଥିରେ ବର୍ଣ୍ଣିତ ଗୋବର୍ଦ୍ଧନ ଆର୍ଯ୍ୟ

ଟୀକାକାର ଆଚାର୍ଯ୍ୟ ଗୋବର୍ଦ୍ଧନ ନୁହନ୍ତି କିମ୍ବା "ଗୀତଗୋବିନ୍ଦ"ର ବର୍ଣ୍ଣିତ ଆଚାର୍ଯ୍ୟ ଗୋବର୍ଦ୍ଧନଙ୍କର ଲକ୍ଷ୍ମଣସେନଙ୍କର ସଭାସଦ କିଛି ସମ୍ବନ୍ଧ ନାହିଁ। ଆଚାର୍ଯ୍ୟ ଗୋବର୍ଦ୍ଧନ ଓ ତାଙ୍କର କନିଷ୍ଠ ଭ୍ରାତା ଉଦୟନ ଆଚାର୍ଯ୍ୟ ଉଭୟେ ଓଡ଼ିଆ। (Ref Book Introduction to descriptive cataloque of Sanskrit Manuscript Vlo.-II by Shri K. N. Mahapatra Sec-II Page 28, 35, 38)

ଏସିଆଟିକ୍ ସୋସାଇଟିର ପ୍ରତିଷ୍ଠାତା ସାର୍ ଉଇଲିୟମ୍ ଜୋନସ୍ ୧୭୯୯ ଖ୍ରୀଷ୍ଟାବ୍ଦରେ ଏସିଆଟିକ୍ ରିସର୍ଚ୍ଚକାଲ୍ ପତ୍ରିକାରେ ଲେଖିଛନ୍ତି- The love of Krishna and Radha are the subject of a little Pastoral drama entittled Gitagobinda. It was the work of Jayadev who was born, he tells himself, in Kenduli which may believed to be in Kalinga.

ବିଶିଷ୍ଟ ମୈଥିଳି ପଣ୍ଡିତ କବି ଚନ୍ଦ୍ରଦତ୍ତ (୧୭୭୨ ଖ୍ରୀଅ) ସଂସ୍କୃତ ଭାଷାରେ ଭକ୍ତିମାଳା ନାମକ ପୁସ୍ତକ ରଚନା କରିଥିଲେ। ଏହି ପୁସ୍ତକରେ ସେ କବି ଜୟଦେବଙ୍କର ଜୀବନ ବୃତ୍ତାନ୍ତ ବର୍ଣ୍ଣନା କରିଛନ୍ତି। ସେଥିରେ କବିଙ୍କର ଜନ୍ମ ବିବାହ ଓ ଗୀତ ରଚନା ସମ୍ପର୍କରେ କେତେକ ତଥ୍ୟ ରହିଛି। ଯଥା :-

"ଜଗନ୍ନାଥ ପୁରୀ ପ୍ରାନ୍ତେ
ଦେଶେ ଚୈବୋତ୍କଳଭିଦେ
କେନ୍ଦୁବିଲ୍ୱ ଇତି ଖ୍ୟାତୋ
ଗ୍ରାମୋ ବ୍ରାହ୍ମଣ ସଙ୍କୁଳ
ତତ୍ରୋତ୍କଳ ଦ୍ୱିଜୋଦାତୋ
ଜୟଦେବ ଇତି ଶ୍ରୁତଃ
ବେଦାଭ୍ୟାସ ରତଃ ଶାନ୍ତଃ
ପୁରୁଷୋତ୍ତମ ପୂଜକ"

ଭକ୍ତିମାଳା ପୃ-୬୧

କବି ଜୟଦେବଙ୍କର ଜନ୍ମସ୍ଥାନ ଓଡ଼ିଶାରେ ବୋଲି ଆନ୍ଧ୍ରପ୍ରଦେଶର ଗନ୍ଧୁଆଦି ସୂର୍ଯ୍ୟନାରାୟଣ ଶାସ୍ତ୍ରୀଙ୍କର ସଂସ୍କୃତ କବି ଜୀବନୀ ଓ ମହାରାଷ୍ଟ୍ରର ମହିପତିଙ୍କର ଭକ୍ତି "ବିଜୟ ନାଟକ"ରେ ଲିଖିତ ଅଛି।

ବଙ୍ଗୀୟ କବି ଶ୍ରୀକୃଷ୍ଣ ଦାଶ (୧୭୬୨ ଖ୍ରୀଅରେ) ଙ୍କ ଦ୍ୱାରା ରଚିତ ଭକ୍ତ କବି ଜୀବନ ବୃତାନ୍ତପୂର୍ଣ୍ଣ ଶ୍ରୀ ଭକ୍ତିମାଳା ନାମକ ଗ୍ରନ୍ଥରେ ଲିଖିତ ଅଛି ଜୟଦେବ ଶ୍ରୀକ୍ଷେତ୍ର ନିବାସୀ ଥିଲେ ଏବଂ ସେ ଶ୍ରୀ ଜଗନ୍ନାଥଙ୍କର ପରମ ଭକ୍ତ ଥିଲେ। ଯଥା -

ଜୟଦେବ ମହାସୟ ମହାନ ମାନୁଷ
ଶ୍ରୀପୁରୁଷୋତ୍ତମ କ୍ଷେତ୍ରେ ବୃକ୍ଷତଳେ ବାସ
ଅଗାଧ ପାଣ୍ଡିତ୍ୟ ବାସ୍ୟ ଅତୁଲ ଭକ୍ତିମାନ
ଶ୍ରୀଜଗନ୍ନାଥ ପ୍ରଭୁର କୃପାର ଭଜନ ॥

(ଭକ୍ତମାଳା ପୃଷ୍ଠା-୧୩୨)

ଓଡ଼ିଶାର କବି ନାରାୟଣ ଦାସ ୧୩୫୦ ଖ୍ରୀଅରେ "ଗୀତଗୋବିନ୍ଦ"ର "ସର୍ବାଙ୍ଗ ସୁନ୍ଦରୀ" ଟୀକା ରଚନା କରି ଏହାର ଯଥାର୍ଥ ବିଶ୍ଳେଷଣ କରିଛନ୍ତି। କବି ଜୟଦେବ ଓଡ଼ିଶାରେ ଜନ୍ମଗ୍ରହଣ କରିଥିଲେ ଏବଂ ବଙ୍ଗର ରାଜା ଲକ୍ଷ୍ମଣ ସେନଙ୍କ ସଭା ସହିତ ତାଙ୍କର କୌଣସି ସମ୍ପର୍କ ନଥିଲା ବୋଲି ଏହି ଟୀକା ଦ୍ୱାରା ପ୍ରମାଣିତ ହୁଏ।

ପୁରୀ ନିବାସୀ ପ୍ରାଚୀନ ବୈଷ୍ଣବ କବି ମାଧବ ପଟ୍ଟନାୟକ ୧୪୯୭ ଖ୍ରୀ:ରେ ନିଜ ଗ୍ରନ୍ଥ "ବୈଷ୍ଣବ ଲୀଳାମୃତ"ରେ ଜୟଦେବଙ୍କର ସମ୍ପର୍କରେ ବିସ୍ତୃତ ବିବରଣୀ ଦେଇଛନ୍ତି:-

ବିପ୍ର ସେ ଜୟଦେବ ନାମ
କ୍ଷେତ୍ର ବରକୁ ଆଗମନ ।
କେନ୍ଦୁଲି ଶାସନ ତା ଗ୍ରାମ
ପ୍ରାଚୀ ନଦୀର ତଟେ ପୁଣ ।
ଶ୍ରୀନୀଳ ମାଧବ ସମିପେ
ଭକ୍ତି କଲା ସେ ନାନା ରୂପେ ।
ଶାସ୍ତ୍ର ପୁରାଣେ ବିଚକ୍ଷଣ
କବିତ୍ୱ ମାର୍ଗେ ତା'ର ମନ ।
ଗୀତ ସେ ରଚିବ ବୋଇଲା
କ୍ଷେତ୍ର ବାସକୁ ମନ ଦେଲା ।
ଶ୍ରୀଜଗନ୍ନାଥର ସମିପେ
ଶୁଦ୍ଧ-ସ୍ୱାତ୍ୱିକ ଭକ୍ତିଭାବେ ।

("ବୈଷ୍ଣବ ଲୀଳାମୃତ" ଦ୍ୱିତୀୟ ଅଧ୍ୟାୟ)

କବି ଜୟଦେବ ୧୧୫୭ରୁ ୧୧୭୦ ପର୍ଯ୍ୟନ୍ତ ରାଘବଙ୍କର ରାଜ ସଭାର ଶ୍ରେଷ୍ଠ ପଣ୍ଡିତ ଥିଲେ। ଏହା ପୂର୍ବରୁ ସେ ସ୍ୱଗ୍ରାମ' କେନ୍ଦୁବିଲ୍ୱରେ ଅବସ୍ଥାନ କରୁଥିଲେ। ବର୍ତ୍ତମାନ ଏହା କେନ୍ଦୁଲି ନାମରେ ଅଭିହିତ। ଭୁବନେଶ୍ୱରଠାରୁ ୨୫ କି:ମି: ଦୂରରେ କେନ୍ଦୁଲି ଅବସ୍ଥିତ। ଖ୍ରୀଷ୍ଟୀୟ ୮ମ ଶତାବ୍ଦୀରୁ ୧୩ ଶତାବ୍ଦୀର ପ୍ରତ୍ନତାତ୍ତ୍ୱିକ ଭଗ୍ନାବଶେଷମାନଙ୍କରୁ ମିଳିଥିବା ତଥ୍ୟ ଅନୁଯାଇ କେନ୍ଦୁଲି ଅତୀତରେ ବୈଷ୍ଣବ ସଂସ୍କୃତିର କେନ୍ଦ୍ରସ୍ଥଳୀ ଥିଲା।' ଏଠାରୁ ମିଳିଥିବା ମାଧବ ମୂର୍ତ୍ତିମାନଙ୍କରୁ ମାଧବ ସଂସ୍କୃତିର ସ୍ପଷ୍ଟ ସୂଚନା ମିଳେ। ନିଆଳି ନିକଟସ୍ଥ ମାଧବ ମନ୍ଦିରକୁ ଜୟଦେବ ଉପାସନା କରିବାକୁ ଯାଉଥିବାର ଲୋକଶ୍ରୁତି ଶୁଣିବାକୁ ମିଳେ। ଅଡ଼ଙ୍ଗପୁରର ପ୍ରାଚୀ ତୀରରେ ଜୟଦେବଙ୍କର ଏକ ସାଧନା ପୀଠ ବର୍ତ୍ତମାନ ତା'ର ମୂକ ସାକ୍ଷୀହୋଇ ରହିଅଛି।

ବିଭିନ୍ନ ସୂତ୍ରରୁ ମିଳିଥିବା ତଥ୍ୟ ଅନୁଯାୟୀ କବି ଜୟଦେବ ଓଡ଼ିଶାରେ ଜନ୍ମଗ୍ରହଣ କରିଥିବା ପ୍ରମାଣିତ ହୁଏ। କିନ୍ତୁ ଦୁଃଖର ବିଷୟ କବି ଜୟଦେବଙ୍କର ଜନ୍ମସ୍ଥାନ କେନ୍ଦୁଲି ଓ ସାଧନା ପୀଠ ଅଡ଼ଙ୍ଗପୁରଠାରେ ସ୍ମୃତି ରକ୍ଷା ପାଇଁ ବିଶେଷ କିଛି କରାଯାଉ ନାହିଁ।

କେନ୍ଦୁଲିରେ ଛ'ଏକର ଜମିକୁ ନେଇ "ଜୟଦେବ ପ୍ରତ୍ନତତ୍ତ୍ୱ ସଂଗ୍ରାହଳୟ" ନିର୍ମାଣ କରାଯାଇଛି। ସଂଗ୍ରହାଳୟଟି ଜୀର୍ଣ୍ଣ ଅବସ୍ଥାରେ ଅଛି। ମୂର୍ତ୍ତିଗୁଡ଼ିକର ଉପଯୁକ୍ତ ରକ୍ଷଣାବେକ୍ଷଣ

ହେଉନାହିଁ । କେନ୍ଦୁଲିକୁ ସଂଯୋଗ କରିବା ପାଇଁ ପ୍ରସ୍ତାବିତ ଜୟଦେବ ମାର୍ଗ ନିର୍ମାଣ କାର୍ଯ୍ୟ ଯଥାଶିଘ୍ର ଶେଷ ହେବା ଆବଶ୍ୟକ ହେଉଛି । ପ୍ରତ୍ୟେହ ଗୋଟିଏ କିମ୍ବା ଦୁଇଟି ବସ୍ ଭୁବନେଶ୍ୱରକୁ ଯାତାୟତ କଲେ ବହୁ ଦୂର ଦୂରାନ୍ତରୁ ଆସୁଥିବା ପର୍ଯ୍ୟଟକମାନେ ଉପକୃତ ହେବା ସଙ୍ଗେ ସଙ୍ଗେ ସ୍ଥାନୀୟ ଲୋକମାନେ ଉପକୃତ ହେବେ । ଅଦଙ୍ଗପୁରଠାରେ ପ୍ରାଚୀ ନଦୀରେ ଏକ ସେତୁ ନିର୍ମାଣ କରାଯାଇ କେନ୍ଦୁଲି ସହିତ ସଂଯୋଗ କରାଗଲେ କଟକ ଭୁବନେଶ୍ୱରରୁ ପର୍ଯ୍ୟଟକମାନଙ୍କୁ ନେଇ କୋଣାର୍କ ଯାଉଥିବା ବସଗୁଡ଼ିକ କେନ୍ଦୁଲି ଦେଇ ଯାଇପାରନ୍ତା । ଏଠାରେ ଏକ ପାଠାଗାର ଖୋଲା ଯିବାର ପ୍ରସ୍ତାବ ଅଛି । ତୁରନ୍ତ ଏହାକୁ କାର୍ଯ୍ୟକାରୀ କରାଯିବା ଉଚିତ । କେନ୍ଦୁଲିକୁ ଏକ ପର୍ଯ୍ୟଟନ କେନ୍ଦ୍ରରେ ପରିଣତ କରିବା ଓଡ଼ିଶା ସରକାରଙ୍କର ସର୍ବପ୍ରଥମ କର୍ତ୍ତବ୍ୟ ।

---

**ଉପାଧ୍ୟକ୍ଷ,**
**ଜୟଦେବ ଅଭ୍ୟର୍ଥନା କମିଟି,**
**କେନ୍ଦୁବିଲ୍ୱ ।**



ଭୁବନେଶ୍ୱର ୟୁନିଟ୍-୪ ମସ୍‌ଜିଦ୍‌ଠାରେ ଆୟୋଜିତ ଇଫ୍‌ତାର ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଓ ସ୍ୱାସ୍ଥ୍ୟ ମନ୍ତ୍ରୀ ସୟଦ୍ ମୁସ୍ତାଫିଜ୍ ଅହମ୍ମଦ ।

# ଦଶାବତାର : ସଙ୍ଗୀତ ରୂପକ

* ପ୍ରହରାଜ ସତ୍ୟନାରାୟଣ ନନ୍ଦ

ମେଘ ସୁନ୍ଦର ବନଭୂମି
ତମାଳର ଶାଖା ଚୁମି
ଅନ୍ଧାର ଲୋଟିପଡ଼େ ମାଟିରେ
ଅନ୍ଧାରେ ଏକା ଏକା
ମୁହଁ ଯାଏ ନାହିଁ ଦେଖା
ନେଇଯାଅ ରାଧା ତୁମ ସାଥିରେ ।

ନନ୍ଦରାଜାର କୁମର.......ସୁକୁମାର
ମାଡ଼ିଆସେ ମେଘ ଅନ୍ଧାର.......ସୁକୁମାର
ଘରେ ପହୁଞ୍ଚାଇ ଦିଅ କୁମର........ସୁକୁମାର
ଏକା ରାତିରେ ଫେରିବା କି ଡର........ସୁକୁମାର
ରାଧା ସଙ୍ଗେ ନେଇଯାଅ କୁମର........ସୁକୁମାର ।

ଶୁଣି ନନ୍ଦ ଆଦେଶ
ରାଧା ଅଧରେ ହସ
ଚାଲନ୍ତି କୃଷ୍ଣ ସାଥେ ଧୀରେ
ପଥ ପାଖରେ କୁଞ୍ଜ
ଭିତରେ ଘନ ସଞ୍ଜ
ଶାଖା ତଳେ ଆଶ୍ରୟ କଲେ ।

କୁଞ୍ଜ ଶାଖାରେ ଗୁଣୁ ଗୁଣୁ ସ୍ୱର
କମ୍ପନ ଥର ଥର
ଶାଖା ତଳେ ରାଧା କୃଷ୍ଣ ଯୁଗଳ
କେଳି ସରି ହୃଦପୁର ।

---ଥିଲ ଝର ଝରେ ଯମୁନା ନଦୀର ଧାର
ଦେଖି ସୁଖେ ରାଧା ମୁଗ୍ଧ ହୃଦୟ
ଏକା ଯିବା ପାଇଁ ଡର ।

ମନ ଘର କୋଣେ କୋଣେ ଅନୁକୋଣେ
କାହାରେ ଅଛି ଲେଖା
କୃଷ୍ଣ ଚରିତ ସୁନ୍ଦର ଛବି
ଅଛି ଉଠେ ରୂପଶିଖା ।

ପଦ୍ମାବତୀର ପଦ୍ମ ପାଦରେ
ଖେଳିବା ମନର ଭ୍ରମର ଆଦରେ
କବି ଜୟଦେବ 'ଗୀତଗୋବିନ୍ଦ'
ଗୀତ ନୃତ୍ୟର ତାଳେ ତାଳେ ।

କର ଯଦି ଅଭିଳାଷ
ଶ୍ରୀହରି ସ୍ମୃତି ସରସ
ରସ ଉଲ୍ଲାସରେ ଭରି ପାରିବ ମନ
ମନରେ ଅଛି ସେ ଭାବ
କେଳି କଳା ଅନୁଭବ
ଭାବନାରେ ରହିଥିବ ତୁମେ ମଗନ
ଶୁଣ ମଧୁ ମୃଦୁ ସେ ନାଦ
ହୃଦୟ ବୀଣାରେ ଜୟଦେବର ପଦ ।

କବି ଉମାପତି ଗୀତ
ପଲ୍ଲବ ପରି ଲଳିତ
କଷ୍ଟ ପଦ ଅତି ଦ୍ରୁତ ଲେଖେ ସରଣ
ଶୃଙ୍ଗାର ରସେ କବିତା
କିଏ ପାରେ କିବା କିବା
ଗୋବର୍ଦ୍ଧନ ଜଣେ ଏକା ରଖଇ ଟାଣ
ଶୁଣିବାକୁ ମଧୁର ଧୋଇ
ଜୟଦେବ ଭାବଭାଷା ତୁଳନା ନାହିଁ ।

## ଦଶବତାର

ପ୍ରଳୟ ପୟୋଧି ଜଳ ଛଳ ଛଳ ଉଛଳ
ପାହାଡ଼ ପାହାଡ଼ ଢେଉ ଚିରି......
ଚକିତ ଚରିତ ନାଆ
ଆଲୋକ ପରିତ ସାହା
ମୀନ ରୂପେ ବେଦ ଥାଅ ଧରି ।
ହେ ହରି/ଜୟ ଜଗଦୀଶ ହରି ।
କ୍ଷିତି......ଧରିଥାଅ ବିପୁଳ ପିଠିରେ
ପୃଷ୍ଠ ଧରିରଖି ଗୁରୁଭାର
ଧରଣୀ ଧାରଣେ ବ୍ରଣ ଦାଗ ପଡ଼େ
ଦୃଷ୍ଟ ଚମତ୍କାର ।
ଦାନ୍ତ ଉପରେ ଶାନ୍ତ ଧରଣୀ ରାଣୀ
ସରଗ ଶଶିର କଳଙ୍କରେଖା
ଯାଏ କି ଶରୀରେ ଟାଣି
ଜୟ ଶୂକର ଶରୀରଧାରୀ
ଜୟ ଜଗଦୀଶ ହରି ।
ତୁମ ଦିବ୍ୟ ହାତରେ ପଦ୍ମ ଝଲକ
ନଖର ଚକିତ ଶୃଙ୍ଗ

ହିରଣ୍ୟକଶିପୁ ବିଦାରଣ କରେ
ଦଳିଦିଏ ନେତ୍ରୁଙ୍କ
ଜୟ କୃଷ୍ଣ କେଶବ ନରହରି ରୂପଧାରୀ
ଜୟ ଜଗଦୀଶ ହରି ।

ଦେବ ବିପଦେ
ଛଳେ ଛଳେ ଛଳିଲ ବଳି
(ପ୍ରଭୁ) ଅଦ୍ଭୁତ ବେଶଧାରୀ ବାମନ
ପାଦ ନଖ ତଳୁ ନୀର
ଝରି ହେଲା ବିସ୍ତାର
ପୁର ପୁର କଲ ପ୍ରଭୁ ପାବନ
ଅଦ୍ଭୁତ ବାମନ ରୂପଧାରୀ କେଶବ
ବାମନ ରୂପଧାରୀ
ଜୟ ଜଗଦୀଶ ହରି ।

କ୍ଷତ୍ରୀୟ ରକତ ଧାରେ ଧୋଇ ଦେଲ ଧରଣୀ
ଭରିଥିଲା ଯେତେ ପାପ ସବୁ ହେଲା ଉଖାଶି
ଲହୁ ଧୋଇବାରୁ ପାଣି
ଶାନ୍ତ ହେଲା ପୁଣି, ପୁଣି
ତାପରୁ ପାଇଲା ବାହି ମେଦିନୀ
ଜୟ କୃଷ୍ଣ ହେ ଜୟ ଭୃଗୁପତି
ରୂପଧାରୀ ଜୟ ଜଗଦୀଶ ହରି ।

ବିତରିଲ......ଅସୁରର......
ଦଶଶିରା ସମରର
ଯଜ୍ଞରେ ରମଣୀୟ ଆହୁତି
ଖୁସି ଦଶ ଦିଗପାଳ
କମନୀୟ ଆକୃତି
ଜୟ ହେ କୃଷ୍ଣ ରାମ ରୂପଧାରୀ ହରି ।
ଜୟ ଜଗଦୀଶ ହରି ।

ମେଘ ରଙ୍ଗର ଉତ୍ତରୀ ଅଙ୍ଗେ ରହେ
କୁଞ୍ଜ କୁଞ୍ଜ ନୀଳ
ଯମୁନାର ଜଳଧାର
ହଳ କର୍ଷଣ ଭୟେ ଭୀରୁ
କୂଳରୁ ଗୁହେଁ
ଜୟ ହେ କୃଷ୍ଣ ହଳଧର ରୂପଧାରୀ
ଜୟ ଜଗଦୀଶ ହରି ।

ନିନ୍ଦିତ ହେଲେ ଯାଗଯଜ୍ଞର ବିଧି
ନିରବଧି ନିରବଧି
ଯୂପରେ ପଶୁର ନିର୍ମମ ବଳି
ଦେଖି ଦୟା ନିରବଧି
ସଦୟ ହୃଦୟ ଧାରୀ
ବୁଦ୍ଧ ଶରୀର ଜୟ ଜଗଦୀଶ ହରି ।

ମ୍ଳେଚ୍ଛ କୁଳର ସଂହାର ଲାଗି
କରବାଳ ଧରି କରେ
ଧୂମକେତୁ ପରି କେତେନା କରାଳ
କଳ୍କୀ ଶରୀର ହରେ ।
ମୀନ ରୂପେ ହରି ବେଦ ଉଦ୍ଧାରଣ
କୂର୍ମ ପୃଷ୍ଠେ ଧରଣୀ ଧାରଣ
ଶୂକର ରୂପରେ ପୃଥିବୀ ତାରଣ
ନୃସିଂହ ନଖେ ଦୈତ୍ୟନାଶନ
ବାମନ ବେଶରେ ବଳି ଲାଞ୍ଛନ
ଭୃଗୁପତି ଦୁଷ୍ଟ କ୍ଷେତ୍ରୀ ନିଧନ
ରାମ ଅବତାରେ ଜିଣିଲ ରାବଣ
ହଳ କରେ ହଳି ରୂପ ସୁଶୋଭନ
ବୁଦ୍ଧ ଶରୀରେ ଦୟା ବିସ୍ତାରଣ
କଳ୍କୀରେ ହେବ ମ୍ଳେଚ୍ଛ ମୋହନ

କୃଷ୍ଣ କେଶବ ଜୟ ଦଶରୂପଧାରୀ
ଜୟ ଜଗଦୀଶ ହରି ।



# ସରକାରୀ ପ୍ରୋତ୍ସାହନରେ ଓଡ଼ିଶାର ଧାନ ଉତ୍ପାଦନ ବୃଦ୍ଧିର ନୂତନ ପ୍ରସ୍ଥ

* ଶ୍ରୀ ଜିତେନ୍ଦ୍ର ପଟ୍ଟନାୟକ

ଭାରତ ମାନଚିତ୍ରରେ ଓଡ଼ିଶା ଏକ କୃଷି ନିର୍ଭରଶୀଳ ରାଜ୍ୟ । ଜଳବାୟୁର ଅନିୟମିତତା, ସୀମିତ ଜଳସେଚନର ସୁବିଧା ତଥା ପ୍ରାକୃତିକ ପ୍ରଭାବ ସତ୍ତ୍ୱେ ଓଡ଼ିଶାର କୃଷି ପ୍ରଶଂଶାର୍ହ ପଦକ୍ଷେପ ନେଇଛି କହିଲେ ଭୁଲ ହେବନାହିଁ । ସରକାରୀ ପ୍ରୋତ୍ସାହନ ଫଳରେ ନୂତନ ଜ୍ଞାନ କୌଶଳର ପ୍ରୟୋଗଦ୍ୱାରା ଏବେ ଓଡ଼ିଶାର କୃଷି ଉନ୍ନତି କରିପାରିଛି । ଗ୍ରାମାଞ୍ଚଳରେ କୃଷି ଅର୍ଥନୀତି ରାଜ୍ୟ ଅର୍ଥନୀତିର କେନ୍ଦ୍ରବିନ୍ଦୁ । ରାଜ୍ୟର ଭିନ୍ନ ଭିନ୍ନ ଚାଷ ମଧ୍ୟରେ ଧାନ, ଗହମ, ମାଣ୍ଡିଆ, ଅନ୍ୟାନ୍ୟ ତୈଳବୀଜ (Oil Seeds) ଚାଷ କରାଯାଇଥାଏ । ମୁଖ୍ୟତଃ ଓଡ଼ିଶାର ଜନସାଧାରଣ ଧାନଚାଷ ଉପରେ ନିର୍ଭର କରନ୍ତି । ଆନୁପାତିକ ଲୋକ ସଂଖ୍ୟାକୁ ବିଚାରକଲେ ଓଡ଼ିଶାର ଚାଷ ହେବା ଦରକାର । ଓଡ଼ିଶାର ମୋଟ ଲୋକ ସଂଖ୍ୟା ୩ କୋଟି ୧୭ ଲକ୍ଷ ମଧ୍ୟରୁ ଶତକଡ଼ା ୨ କୋଟି ୭୪ ଲକ୍ଷ ଗ୍ରାମାଞ୍ଚଳରେ ବାସ କରନ୍ତି ଏବଂ ଶତକଡ଼ା ୧୩ ଭାଗ ଅର୍ଥାତ୍ ୪୩ ୪୨ ଲକ୍ଷ ଲୋକ ସହରାଞ୍ଚଳରେ ବାସ କରନ୍ତି । ନୂତନ ସମୀକ୍ଷାରୁ ଜଣାଯାଏ ଯେ, ଓଡ଼ିଶାର ମୋଟ ଲୋକସଂଖ୍ୟାର ୨୮ ଲକ୍ଷ ୭୨ ହଜାର ଅର୍ଥାତ୍ ଶତକଡ଼ା ୨୭ ଭାଗ ହେଲେ କୃଷି ଶ୍ରମିକ । ଏଥିରୁ କୃଷି ଉପରେ ନିର୍ଭରଶୀଳତା ନିହାତି ବେଶୀ ବୋଲି ଏଥିରୁ ସ୍ପଷ୍ଟ ଅନୁମିତ ।

ରାଜ୍ୟର ସମୁଦାୟ ୧୫.୫ ନିୟୁତ ହେକ୍ଟର କ୍ଷେତ୍ରଫଳରୁ ମୋଟ ୬୩ ନିୟୁତ ହେକ୍ଟର ଜମି କୃଷି କାର୍ଯ୍ୟରେ ଲାଗିଥାଏ । ସମୁଦାୟ ଜମିରୁ କେବଳ ୧.୯ ନିୟୁତ ହେକ୍ଟର ଜମିରେ ଅର୍ଥାତ୍ ମାତ୍ର ଶତକଡ଼ା ୩୩ ପାଇଁ ଜଳସେଚନର ସୁବିଧା ହୋଇଛି ଏବଂ ଅନ୍ୟାନ୍ୟ ଚାଷ ଅଞ୍ଚଳର ଚାଷକାର୍ଯ୍ୟ ମୌସୁମୀ ଋତୁରେ ବର୍ଷାର ଅନିଶ୍ଚିତତା ସହିତ ଆଗେଇ ଚାଲିଥାଏ । ଆମରାଜ୍ୟର ଧାନ ମୁଖ୍ୟ ଫସଲ ହୋଇଥିବାରୁ, ଏହା ଖରିଫ୍ ଋତୁରେ ୪୨ ଲକ୍ଷ ହେକ୍ଟର ଜମିରେ ଏବଂ ଖରା ଦିନେ ୨ରୁ ୨.୫ ଲକ୍ଷ ହେକ୍ଟର ଜମିରେ ଚାଷ କରାଯାଇଥାଏ । ୧୯୯୧-୯୨ ବର୍ଷସୁଦ୍ଧା ହାରାହାରି ଚାଉଳ ଉତ୍ପାଦନ ହେକ୍ଟର ପିଛା ୧୪୬୫ କେ.ଜି. ଥିଲା । ରାଜ୍ୟର ଆର୍ଥିକ ଦୁରବସ୍ଥାର ସମ୍ମୁଖୀନ ନ ହେବାପାଇଁ ଅଧିକ ଉତ୍ପାଦନ ଓ ହେକ୍ଟର ପିଛା ଅମଳ ବୃଦ୍ଧି କରିବା ଆବଶ୍ୟକ ଥିଲା । ସରକାରୀ ପ୍ରୋତ୍ସାହନ ଦ୍ୱାରା ଏହା ସମ୍ଭବ ହୋଇ ପାରିଛି ।

୧୯୮୦-୮୧ ମସିହାରେ ଅଧିକ ଅମଳକ୍ଷମ ଧାନଚାଷ ଅନ୍ତର୍ଭୁକ୍ତ ଜମି ପରିମାଣ ୨୯ ଭାଗ ଥିଲାବେଳେ ୧୯୯୧-୯୨ ମସିହାରେ ଏହା ଶତକଡ଼ା ୫୯ ଭାଗରେ ପହଞ୍ଚିଛି । ୧୯୯୬-୯୭ ବର୍ଷ ସୁଦ୍ଧା ଅର୍ଥାତ୍ ଅଷ୍ଟମ ପଞ୍ଚବାର୍ଷିକ ଯୋଜନା ଶେଷ ସୁଦ୍ଧା ଅଧିକ ଅମଳକ୍ଷମ ଧାନ ଚାଷରୁ ଶତକଡ଼ା ୭୦ ଭାଗ ଆୟ ହେବ ବୋଲି ଅଟକଳ କରାଯାଇଛି । ସମଗ୍ର ରାଜ୍ୟର ୨୪୩ ଗୋଟି ବ୍ଲକରେ "ସମନ୍ୱିତ ଧାନ ଉନ୍ନୟନ ଯୋଜନା" କାର୍ଯ୍ୟକାରୀ କରାଯାଇଛି ଏବଂ ଏହା ଦ୍ୱାରା ନିଶ୍ଚିତଭାବେ ଧାନ ଅମଳ ଉତ୍ସାହଜନକ ହେବ ।

୧୯୮୮-୮୯ ସର୍ଭେ ରିପୋର୍ଟରେ ପ୍ରଦତ୍ତ ଅଛି–ଓଡ଼ିଶାର ସହରାଞ୍ଚଳ ଲୋକ ମାସକୁ ୧୨ କିଲୋ ଚାଉଳ ପାଉଥାନ୍ତିଲେ ଗ୍ରାମାଞ୍ଚଳ ଲୋକେ ମାତ୍ର ୧୫ କିଲୋ ଚାଉଳ ପାଉଥିଲେ । କିନ୍ତୁ ସମୀକ୍ଷାନୁଯାୟୀ ଜଣାଯାଏ, ପ୍ରତ୍ୟେକ ବ୍ୟକ୍ତି ପାଇଁ ୨୦ କେ.ଜି. ଚାଉଳ ନିତାନ୍ତ ଜରୁରୀ । ଚାଉଳର ସ୍ୱଳ୍ପତା ଯେଉଁ କାରଣରୁ ହୋଇ ଥାଉନା କାହିଁକି, ପ୍ରତିବର୍ଷ ବନ୍ୟା ଦୁର୍ବିପାକ, ମରୁଡ଼ି ଯୋଗୁଁ ଏହା ବୃଦ୍ଧି ପାଇଥାଏ । ଅତଏବ୍ ଉତ୍ପାଦନ ହାର ନ ବଢ଼ି ଖର୍ଚ୍ଚ ପରିମାଣ ବୃଦ୍ଧି ପାଇଥାଏ । ୧୯୮୪-୮୫ରୁ ୧୯୮୯-୯୦ ସର୍ଭେରୁ ଜଣାଯାଏ ଯେ:–

| ଆର୍ଥିକ ବର୍ଷ | (ଲକ୍ଷରେ) |
|---|---|
| ୧୯୮୪-୮୫ | ୪୧ ଟନ୍ |
| ୧୯୮୫-୮୬ | ୫୨ ଟନ୍ |
| ୧୯୮୬-୮୭ | ୪୮ ଟନ୍ |
| ୧୯୮୭-୮୮ | ୩୪ ଟନ୍ |
| ୧୯୮୮-୮୯ | ୫୨ ଟନ୍ |
| ୧୯୮୯-୯୦ | ୪୮ ଟନ୍ |

## ବୈଜ୍ଞାନିକ ପ୍ରଣାଳୀ ଓ ଧାନ ଉତ୍ପାଦନ :

ପ୍ରତିବର୍ଷ ମୋଟ ଯେତେ ଜମିର ଫସଲ ଚାଷ କରାଯାଏ, ତା'ର ହାରାହାରି ଶତକଡ଼ା ୪୭ ଭାଗରୁ ଊର୍ଦ୍ଧ୍ୱ ଜମିରେ କେବଳ ଧାନଚାଷ କରାଯାଇଥାଏ । ୧୯୮୮-୮୯ ମସିହା ହିସାବ ଅନୁଯାୟୀ ମୋଟ ଚାଷ ଜମିରେ ହାରାହାରି ୪୭ ଭାଗରେ ଧାନଚାଷ କରାଯାଇଥିଲା । ଉକ୍ତ ବର୍ଷ ବର୍ଷା ଦିନରେ ଧାନ ଜମିର ଆୟତନ ଥିଲା ଶତକଡ଼ା ୬୫ ଭାଗ । ମାତ୍ର ଉତ୍ପାଦନ ପରିମାଣ ପୂର୍ବ ବର୍ଷ ଅପେକ୍ଷା ବୃଦ୍ଧିପାଇ ଶତକଡ଼ା ୨୧ ଭାଗ ଅର୍ଥାତ୍ ୧୮୭୪ କେ.ଜି.ରେ ପହଞ୍ଚି ପାରିଛି । ଆଧୁନିକ ପ୍ରଣାଳୀରେ ଚାଷ କରାଯିବାର ବହୁ ସମୁଧା ଏବେ ଉପଲବ୍ଧ ହେଉଛି । ସ୍ଥାନୀୟ ଜଳବାୟୁର ପ୍ରଭାବ, ମୃତ୍ତିକାର କିସମ ଅନୁସାରେ ଧାନ ଚାଷର ମୂଲ୍ୟାୟନ କରାଯାଇଥାଏ । ବୈଜ୍ଞାନିକ ଦୃଷ୍ଟି କୋଣରୁ ଧାନଚାଷକୁ

ଅଗ୍ରାଧିକାର ଦିଆଯାଇ ଶସ୍ୟର ଉତ୍ପାଦନ ବୃଦ୍ଧି କରାଯାଉଛି। ବର୍ଷା ଦିନିଆ ଅଧିକ ଅମଳକ୍ଷମ ଧାନ ବିହନର ଅମଳ ସମୟ ଓ ଜମିର କିସମ ନିମ୍ନରେ ପ୍ରଦତ୍ତ ହେଲା:–

| ବିହନର ନାମ | କେତେ ଦିନରେ ଅମଳ ହୁଏ | ଏକର ପ୍ରତି ହାରାହାରି ଅମଳ (କ୍ୱିଣ୍ଟାଲ) |
|---|---|---|
| **ଅତି ଢିପ ଜମି** | | |
| ହୀରା | ୭୦ | ୮ ରୁ ୧୦ |
| କଳିଙ୍ଗ–୩ | ୭୫ | ୧୦ ରୁ ୧୨ |
| ପଥରା | ୯୦ | ୧୨ ରୁ ୧୪ |
| ନୀଳା | ୯୦ | ୧୦ ରୁ ୧୨ |
| **ଢିପ ଜମି** | | |
| ପାରିଜାତ | ୯୦ ରୁ ୯୫ | ୧୨ ରୁ ୧୬ |
| ଅନ୍ନଦା | ୧୧୦ ରୁ ୧୨୦ | ୧୨ ରୁ ୧୬ |
| ଆଇ.ଆର୍.–୩୬ | ୧୨୫ | ୧୬ ରୁ ୨୨ |
| ସାରଥି | ୧୧୫ ରୁ ୧୨୦ | ୧୪ ରୁ ୧୬ |
| ସରସା | ୧୨୦ | ୧୬ |
| ଲଲାଟ | ୧୨୫ | ୧୬ ରୁ ୧୮ |
| **ମଝିଆଳି ଜମି** | | |
| ଯଯାତି | ୧୩୫ | ୧୪ ରୁ ୧୬ |
| ଗୌରୀ | ୧୩୫ | ୧୪ ରୁ ୧୬ |
| ପଦ୍ମିନୀ | ୧୪୦ | ୧୬ ରୁ ୧୮ |
| ଫାଲ୍‌ଗୁନୀ | ୧୪୦ | ୧୪ ରୁ ୧୬ |
| **ଖାଲ ଜମି** | | |
| ମାହୁରୀ | ୧୪୫ | ୧୮ |
| ଟି–୧୪୧ | ୧୫୦ | ୧୨ରୁ ୧୪ |
| ଏସ୍–ଆର୍ ୨୬ଏ (ଲୁଣା ଜମି ପାଇଁ) | ୧୫୦ | ୧୦ରୁ ୧୨ |
| ଜଗନ୍ନାଥ | ୧୪୫ | ୧୬ରୁ ୨୦ |
| ସାବିତ୍ରୀ | ୧୫୫ | ୧୬ରୁ ୨୦ |
| ସ୍ୱର୍ଣ୍ଣ | ୧୫୫ | ୧୬ରୁ ୨୦ |
| ଉତ୍କଳ ପ୍ରଭା | ୧୬୦ | ୧୪ରୁ ୧୬ |
| ଏଫ୍.ଆର୍. ୪୩ ବି | ୧୬୦ | ୧୨ରୁ ୧୪ |
| ସି.ଆର୍. ୧୦୧୪ | ୧୪୫–୧୬୦ | ୧୪ରୁ ୧୬ |
| ତୁଳସୀ | ୧୭୦ | ୧୬ରୁ ୧୮ |
| ପାଣି ଧାନ | ୧୮୦ | ୧୬ରୁ ୧୮ |

**କୃଷି ଓ ଖାଦ୍ୟ ଉତ୍ପାଦନ ନିର୍ଦ୍ଦେଶାଳୟ, ଓଡ଼ିଶା ସୌଜନ୍ୟରୁ**

## ସମନ୍ୱିତ ଧାନ ଉନ୍ନୟନ ଯୋଜନା

ଓଡ଼ିଶା ଧାନ ଚାଷ ଉପରେ ମୁଖ୍ୟତଃ ନିର୍ଭର କରୁଥିବାରୁ ଓଡ଼ିଶା ସରକାର ଏକ ସମନ୍ୱିତ ଧାନ ଉନ୍ନୟନ ଯୋଜନା କରିଛନ୍ତି। ରାଜ୍ୟରେ ମୋଟ ୩୧୪ଟି ବ୍ଳକ୍‌ରେ ଏହି ଯୋଜନା କାର୍ଯ୍ୟକାରିତା ପାଇଁ ଚିନ୍ତା କରାଯାଇଛି, ହେଉଛି ... ମାତ୍ର–ସମୁଦାୟ ୩୭୩.୨୩ ଲକ୍ଷ ଟଙ୍କାର ବ୍ୟୟ ଅଟକଳରେ ରାଜ୍ୟର ଏହି ଯୋଜନା ପ୍ରତ୍ରୁଣ୍ଣରୁରେ ଆଗେଇ ଚାଲିଛି।

## ଲକ୍ଷ୍ୟ ଓ ସାଫଲ୍ୟ

* ଧାନ ଫସଲର ଉତ୍ପାଦନ ଓ ଉତ୍ପାଦିକା ଶକ୍ତି ବୃଦ୍ଧି।

* ପ୍ରତ୍ୟେକ ଗ୍ରାମ ପଞ୍ଚାୟତର ଶତକଡ଼ା ୧୦୦ ଭାଗ ସାହାଯ୍ୟରେ ଏକ ପ୍ରଦର୍ଶନୀ କ୍ଷେତ୍ର ଆୟୋଜନର ବ୍ୟବସ୍ଥା ରହିଛି।

* ଉଭୟ ମହିଳା ଓ ପୁରୁଷ କୃଷକମାନଙ୍କ ପାଇଁ ୩ ଦିନିଆ ତାଲିମ୍‌ର ବ୍ୟବସ୍ଥା।

* ପ୍ରମାଣିତ ଧାନ ବିହନ, ଜିଙ୍କ୍ ସଲ୍‌ଫେଟ୍, କୀଟନାଶକ ଔଷଧ, ସିଞ୍ଚନ ଯନ୍ତ୍ର, ବଳଦ ଟଣା ଓ ମନୁଷ୍ୟ ଟଣା କୃଷି ଯନ୍ତ୍ରପାତି, ପାଣି ପମ୍ପ ଉପରେ ରିହାତି ବ୍ୟବସ୍ଥା।

* ପାମ୍ପାର ଟିଲର ଉପରେ ସର୍ବୋଚ୍ଚ ୧୦,୦୦୦ ଟଙ୍କା ରିହାତି।

ଅର୍ଥାତ୍ ଏହି ଯୋଜନା ଧାନଚାଷର ସାମଗ୍ରିକ ଉନ୍ନତି ପାଇଁ ଉଦ୍ଦିଷ୍ଟ। ଗ୍ରାମାଞ୍ଚଳରେ ପୁରୁଣାକାଳିଆ ପଦ୍ଧତି ଉପରେ ନୂତନ ବୈଜ୍ଞାନିକ କୌଶଳର ଗୁରୁତ୍ୱ ସୂଚିତ କରିବାପାଇଁ "ସମନ୍ୱିତ ଧାନ ଉନ୍ନୟନ ଯୋଜନା"ର କାର୍ଯ୍ୟ ନିଶ୍ଚୟ ସ୍ୱାଗତଯୋଗ୍ୟ।

## କୃଷି ସାମଗ୍ରୀ ଯୋଗାଣ : ପୋକ ନିରାକରଣ :

ସରକାରଙ୍କ ତରଫରୁ ସ୍ୱତନ୍ତ୍ରଭାବେ କୃଷି ସାମଗ୍ରୀ ଓ ପୋକ ନିରାକରଣ ପାଇଁ ଔଷଧ ଯୋଗାଇ ଦିଆଯାଏ। କାଣ୍ଡବିନ୍ଧା, କାହାଳିଆ ପୋକ (ବେଙ୍ଗୀ), ମାଟିଆ ଗୁଚ୍ଛି (B. P. A.) ପୋକମାନଙ୍କ ପାଇଁ ପ୍ରତିଷେଧକ ଔଷଧ ବ୍ୟବହାର ସହିତ ମହିଷା, ପତ୍ରପୋଡ଼ା, ସାହାର (ଫଲ୍ସ ସ୍ମଟ୍), ଉଦ୍‌ବେଙ୍ଗ, ସିଥ୍‌ବାଇଟ୍ ପ୍ରଭୃତି ରୋଗ ପାଇଁ ଭିନ୍ନ ଭିନ୍ନ ଔଷଧ ବ୍ୟବହାର ଶିଖା ଯାଇଥାଏ। ରିହାତି ଦରରେ ଏ ସବୁ ସାଧାରଣ ଲୋକମାନଙ୍କୁ ଯୋଗାଇ ଦେବା ସହ ଆବଶ୍ୟକୀୟ କୃଷି ସାମଗ୍ରୀ ଦିଆଯାଏ।

ଅତଏବ୍, ପ୍ରତ୍ୟେକ ଚାଷୀ ଜ୍ଞାତବ୍ୟ ତଥ୍ୟାବଳୀ ମନେ ରଖିବା ଉଚିତ୍। ସବୁ କ୍ଷେତ୍ରରେ ବୁଣିବା ସମୟ ଓ ପ୍ରଣାଳୀ ବିହନ ନିର୍ବାଚନ, ବିହନ ବିଶୋଧନ, ସାର ପ୍ରୟୋଗ ସବୁ କିଛି ଜାଣି ଜ୍ଞାନର ବାସ୍ତବ ଉପଯୋଗ କରିବା ଉଚିତ। ଏତଦ୍ ବ୍ୟତୀତ କୃଷି ବିଶେଷଜ୍ଞଙ୍କ ସହ ସିଧା ସଳଖ ସମ୍ପର୍କ ସ୍ଥାପନକରି ପରାମର୍ଶ ନେବା ଉଚିତ।

ମାର୍ଫତ–ଜ୍ଞାନ ପଟ୍ଟନାୟକ,
ଅଫିସ୍–ସେଚ ସଦନ (କ୍ୱାର୍ଟସ୍),
ଭୁବନେଶ୍ୱର–୧, ଓଡ଼ିଶା।

# ଉତ୍କଳର ପରମ୍ପରା : ଅକ୍ଷୟ ତୃତୀୟା

* ବିଶ୍ୱଜିତ୍ ମିଶ୍ର

ଉତ୍କଳୀୟମାନଙ୍କର ସାମାଜିକ ଜୀବନକୁ ଅସଂଖ୍ୟ ପର୍ବପର୍ବାଣୀ ସରସ, ସୁନ୍ଦର ଓ ମଧୁମୟ କରିଥାଏ । ଫଳରେ ସେ ସବୁ ସାମାଜିକ ଜୀବନର ଅଙ୍ଗୀଭୂତ ହୋଇଯାଇଥାଏ । ମନୁଷ୍ୟ ସର୍ବଦା ଜଞ୍ଜାଳଲିପ୍ତ । ଅର୍ଥାଗତ ତଥା ଭୌତିକ ସୁଖ ସ୍ୱାଚ୍ଛନ୍ଦ୍ୟ କାରଣର ଅନୁସନ୍ଧାନ ପାଇଁ ହେଉ ବା ମୁକ୍ତି ପଥ ଅନ୍ୱେଷଣରେ ହେଉ, ସବୁବେଳେ ତାକୁ କିଛି ନା କିଛି କାର୍ଯ୍ୟ କରିବା ବା ଚିନ୍ତା କରିବାକୁ ହେଉଛି । ଏହି କର୍ମକ୍ଲାନ୍ତ ଜଞ୍ଜାଳମୟ ଜୀବନରେ ସରସତା ଭରିଦେବା ପାଇଁ ସମାଜରେ ବିଭିନ୍ନ ପର୍ବପର୍ବାଣୀର ସୃଷ୍ଟି । "ଗାଁ ପରିମଳ ଧୋବା ତୁଠରୁ" ପରି ଏହି ପର୍ବପର୍ବାଣୀଗୁଡ଼ିକରୁ ଆମର ରୀତିନୀତି, ଚରିତ୍ର, ଦର୍ଶନ ପ୍ରଭୃତିର ସ୍ୱରୂପ ଜଣାପଡ଼େ ।

ସାମାଜିକ ଉତ୍ସବ, ଋତୁ ଉତ୍ସବ ଏବଂ ଧର୍ମ ଉତ୍ସବ ଏହିପରି ତିନିଗୋଟି ଶ୍ରେଣୀରେ ଉତ୍କଳୀୟ ପର୍ବପର୍ବାଣୀଗୁଡ଼ିକୁ ବିଭକ୍ତ କରାଯାଇଥାଏ । ଋତୁ ଏବଂ ଧର୍ମର କିଛି ପ୍ରଭାବ ଥିଲେ ମଧ୍ୟ ସାଧାରଣତଃ "ଅକ୍ଷୟ ତୃତୀୟା" ଆମ କୃଷି ପ୍ରଧାନ ସମାଜର ଏକ ମହତ୍ତ୍ୱପୂର୍ଣ୍ଣ ଉତ୍ସବ । ଉତ୍କଳୀୟମାନେ ଏହି ପର୍ବକୁ ବିଧିବଦ୍ଧ ଭାବେ ପାଳନ କରିଥାନ୍ତି । ବୈଶାଖ ମାସ ଶୁକ୍ଳ ପକ୍ଷ ତୃତୀୟାକୁ ଅକ୍ଷୟ ତୃତୀୟା କହନ୍ତି । ବହୁ କାଳରୁ ଓଡ଼ିଶାରେ ଏହା ପାଳିତ ହୋଇ ଆସୁଅଛି । କୃଷି କାର୍ଯ୍ୟ ଓଡ଼ିଶାବାସୀଙ୍କର ଏକ ପ୍ରଧାନ ସମ୍ବଳ ହୋଇଥିବା ହେତୁ ଏହାକୁ ଭିତ୍ତିକରି ବିଭିନ୍ନ ପର୍ବପର୍ବାଣୀ, ବ୍ରତ, ଓଷା ପାଳିତ ହେବା ସ୍ୱାଭାବିକ । ତେଣୁ ଅକ୍ଷୟ ତୃତୀୟାକୁ କୃଷି ପର୍ବ ବୋଲି କୁହାଯାଇଥାଏ । ଭୂମିପୂଜା କରିବା ଦୃଷ୍ଟାନ୍ତ ବେଦରେ ମଧ୍ୟ ଉଲ୍ଲେଖ ରହିଛି । ଯଜୁର୍ବେଦରେ ଉଲ୍ଲେଖ ଅଛି ଯେ, ତ୍ୱା ବର୍ଦ୍ଧସେ ତ୍ୱା କୃଷ୍ୟୈ । ତ୍ୱା କ୍ଷେମାୟତ୍ୱା ଅର୍ଥାତ୍ ହେ ଭୂମି ! ତୁମକୁ ବୃଦ୍ଧି, କୃଷି ଓ ଆଶ୍ରୟ ନିମନ୍ତେ ଧାରଣ କରିଅଛୁ । ତେଣୁ ଭୂମି ହେଉଛି ଆମର ଜନନୀ ସ୍ୱରୂପା । ତାହାର ପୂଜା ଏବଂ ବନ୍ଦନା କରିବା ଆମର ପରମ କର୍ତ୍ତବ୍ୟ ।

ପ୍ରାୟ ଖ୍ରୀଷ୍ଟୀୟ ନବମ ଶତାବ୍ଦୀଠାରୁ ଅକ୍ଷୟ ତୃତୀୟା ପର୍ବ ପାଳିତ ହୋଇ ଆସୁଅଛି ବୋଲି ବହୁ ଆଲୋଚକ ମତ ପ୍ରଦାନ କରିଥାନ୍ତି । ବୈଦିକ ମତାନୁଯାୟୀ ଏହି ଦିନରୁ ସତ୍ୟ ଯୁଗର ଆରମ୍ଭ ହୋଇଥିଲା । ସମସ୍ତ ଶୁଭ କାର୍ଯ୍ୟର ଅନୁକୂଳ ଏହି ଦିନରୁ କରାଯାଇଥାଏ । ଗୃହ ନିର୍ମାଣ, ନିର୍ବନ୍ଧ, ବିବାହ, ଉପନୟନ ପ୍ରଭୃତି ମଙ୍ଗଳକର୍ମ ଏହି ଦିନ ଅନୁଷ୍ଠିତ ହୋଇଥାଏ । ଅକ୍ଷୟ ତୃତୀୟା ଦିନ କୃଷକମାନେ ନୂଆ ଲୁଗା ପିନ୍ଧି ତାଙ୍କର ସ୍ତ୍ରୀମାନଙ୍କଠାରୁ ହଳଦୀ, ଚନ୍ଦନ, ସିନ୍ଦୂର ଲେପିତ ବିହନ, ଧାନ ପୂର୍ଣ୍ଣ ନୂତନ ଗଉଣୀକୁ ଶଙ୍ଖ ହୁଳହୁଳି ମଧ୍ୟରେ ମୁଣ୍ଡରେ ଥୋଇ ଏବଂ ଅନ୍ୟ ଏକ ନୂତନ ଟୋକେଇରେ ପିଠା ନେଇ ହଳ ଲଙ୍ଗଳ ଧରି କ୍ଷେତକୁ ଯାଇଥାନ୍ତି । ସେଠାରେ ଲକ୍ଷ୍ମୀ ଠାକୁରାଣୀଙ୍କୁ ଭୋଗ ଦେଇ ଏହା କ୍ଷେତର ଇଶାଣ କୋଣରେ ପୋତି ହଳ ବୁଲାଇଥାନ୍ତି ଓ ମୁଠା ମୁଠା ବିହନ କିଆରୀରେ ବୁଣିଥାନ୍ତି । ଏହାକୁ ଅକ୍ଷିମୁଠି କୁହାଯାଏ । କୃଷକ ନିଜ କିଆରୀରେ ଅକ୍ଷିମୁଠି ବୁଣିସାରି ମା' ଲକ୍ଷ୍ମୀ ଠାକୁରାଣୀଙ୍କୁ ପ୍ରାର୍ଥନା କରି କହିଥାନ୍ତି "ହେ ମା' ଲକ୍ଷ୍ମୀ ଠାକୁରାଣୀ ! ମୋ ଶସ୍ୟ କ୍ଷୟ ନହେଉ" । ତେଣୁ ଏହି ଦିନର ନାମ ଅକ୍ଷୟ ତୃତୀୟା । ଏହି ଦିନ କୃଷକ ଉପବାସ କରି ମୁଠି ଅନୁକୂଳ ପରେ ଘରେ କ୍ଷିରି ରାନ୍ଧି ଖାଏ ।

ଅକ୍ଷୟ ତୃତୀୟା ଦିନ କୁଳବଧୂମାନେ ମା' ଷଠିଦେବୀଙ୍କର ପୂଜା ମଧ୍ୟ କରିଥାନ୍ତି । ଛୋଟ ପିଲାମାନଙ୍କର ମଙ୍ଗଳକାରିଣୀ ହେଉଛନ୍ତି ଷଠିଦେବୀ । ଓଡ଼ିଶାର ପୂର୍ବପଲ୍ଲୀରେ ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ଏହି ପୂଜା ଘରେ ଘରେ ପାଳିତ ହୋଇଥାଏ । ପ୍ରାତଃକାଳରୁ ଗୃହର କୁଳବଧୂ ସ୍ନାନ ସାରି ନୂତନ ବସ୍ତ୍ର ପରିଧାନ ପୂର୍ବକ ନିଷ୍ଠାର ସହ ଏହି ପୂଜା ଅନୁଷ୍ଠିତ କରାଇଥାନ୍ତି । ଛୋଟ ଛୋଟ ମାଟି ଘଡ଼ି ଓ ପତୁଲିରେ ଚୂଡ଼ାଭଜା, ଖଇ ଇତ୍ୟାଦି ପୂର୍ଣ୍ଣକରି ତାହା ଉପରେ ବିଭିନ୍ନ ପ୍ରକାରର ଫଳ ଏବଂ ମିଠା ଜାତୀୟ ପଦାର୍ଥ ପୂଜା କରିଥାନ୍ତି । ପୂଜା ସାରିବା ପରେ ଛୋଟ ଛୋଟ ପିଲାଙ୍କ ମଧ୍ୟରେ ଏହା ନିଜ ହାତରେ ବଣ୍ଟନ କରିଥାନ୍ତି । ଛୋଟ ଛୋଟ ପୁଅ ଝିଅମାନେ ମଧ୍ୟ ସକାଳୁ ଗୋଟିଏ ଗୋଟିଏ ବ୍ୟାଗ୍ କାନ୍ଧରେ ପକାଇ ସାହି, ଗଳି କନ୍ଦି ବୁଲି ମା' ଘଡ଼ି ଦିଅ ବୋଲି ଦ୍ୱାର ଦ୍ୱାର ବୁଲି ମାଗିଥାନ୍ତି । ଘଡ଼ି ପାଇଲା ପରେ ଖୁସି ମନରେ ଫେରି ଯାଇଥାନ୍ତି । ଏହି ଦୃଶ୍ୟ ବିଶେଷ କୌତୁହଳଦୀପକ । ପିଲାମାନଙ୍କୁ ଘଡ଼ି ବାଣ୍ଟିଲେ ଷଠିଦେବୀ ଖୁସି ହେବେ ଏବଂ ନିଜ ପରିବାରର ପିଲାମାନଙ୍କର ମଙ୍ଗଳ ହେବ ବୋଲି ବିଶ୍ୱାସ ବହୁ କାଳରୁ ପ୍ରଚଳିତ ।

ଶ୍ରୀଜଗନ୍ନାଥ ମନ୍ଦିରରେ ଅକ୍ଷୟ ତୃତୀୟା ଦିନଟି ସ୍ୱତନ୍ତ୍ର ଭାବେ ପାଳନ କରାଯାଇଥାଏ । ଆଷାଢ଼ ମାସରେ ଅନୁଷ୍ଠିତ ହେଉଥିବା ଶ୍ରୀଜୀଉମାନଙ୍କର ବିଶ୍ୱ ବିଖ୍ୟାତ ପବିତ୍ର ରଥଯାତ୍ରା ନିମନ୍ତେ ରଥ ତିଆରି କାର୍ଯ୍ୟ ଏହି ଦିନଠାରୁ ଆରମ୍ଭ ହୋଇଥାଏ । ପାରମ୍ପରିକ ଭାବେ ପ୍ରତି ବର୍ଷ ଗ୍ରୀଷ୍ମ ଋତୁରେ ଶ୍ରୀକ୍ଷେତ୍ରର ନରେନ୍ଦ୍ର ପୁଷ୍କରିଣୀରେ ୨୧ ଦିନ ବ୍ୟାପୀ ଶ୍ରୀଜୀଉଙ୍କର ଗ୍ରୀଷ୍ମ ଉତ୍ସବ ଚନ୍ଦନ ଯାତ୍ରାର ଆରମ୍ଭ ଅକ୍ଷୟ ତୃତୀୟାଠାରୁ ହିଁ ହୋଇଥାଏ । ଶ୍ରୀମନ୍ଦିରରେ ପ୍ରତିଦିନ ସମ୍ପାଦିତ ହେଉଥିବା ନୀତିଗୁଡ଼ିକ ମଧ୍ୟରୁ ଉକ୍ତ ଦିନ ମଧ୍ୟାହ୍ନ ଧୂପ

ପୂର୍ବରୁ ମହାଜନମାନେ ଦକ୍ଷିଣ ଘରୁ ରାମକୃଷ୍ଣ ଏବଂ ମଦନମୋହନଙ୍କୁ ଭିତରେ ସିଂହାସନକୁ ବିଜେ କରାଇଥାନ୍ତି । ପାଳିଆ ପୂଜାପଣ୍ଡାମାନେ ମଧ୍ୟାହ୍ନ ଧୂପ ଭୋଗ ଶେଷ କରିବା ପରେ ପୂଜାପଣ୍ଡା, ପତି ମହାପାତ୍ର ଏବଂ ମୁଦିରସ୍ତ ବନ୍ଦାପନା କାର୍ଯ୍ୟ କରିଥାନ୍ତି । ବନ୍ଦାପନା ପରେ ପୂଜାପଣ୍ଡାଙ୍କଠାରୁ ଆଜ୍ଞାମାଳ ନେଇ ମହାଜନ ସେବାୟତମାନେ ନିଜ ହାତରେ ରାମକୃଷ୍ଣଙ୍କୁ ପାଲିଙ୍କିରେ ଏବଂ ଲକ୍ଷ୍ମୀ, ସରସ୍ୱତୀଙ୍କୁ ମଦନମୋହନଙ୍କ ସହ ମଣି ବିମାନରେ ବିଜେ କରାଇଥାନ୍ତି । ବିଜେ କାହାଳୀ ବାଜିବା ପରେ ବିମାନବଡୁ ସେବକମାନେ ବିମାନ ଓ ପାଲିଙ୍କି କାନ୍ଧେଇ ଘଣ୍ଟ, ଛତା, କାହାଳୀ ସହ ସିଂହଦ୍ୱାର ଦେଇ ନରେନ୍ଦ୍ର ପୁଷ୍କରିଣୀ ଅଭିମୁଖେ ଯାତ୍ରାରମ୍ଭ କରିଥାନ୍ତି । ଶ୍ରୀକ୍ଷେତ୍ରରେ ଅଧିଷ୍ଠିତ ପଞ୍ଚପାଣ୍ଡବ (ପଞ୍ଚମହାଦେବ), ଶ୍ରୀଲୋକନାଥ, ଶ୍ରୀଯମେଶ୍ୱର, ଶ୍ରୀମାର୍କଣ୍ଡେୟ, ଶ୍ରୀନୀଳକଣ୍ଠ, ଶ୍ରୀକପାଳମୋଚନ ସେମାନଙ୍କର ନିଜସ୍ୱ ବିମାନମାନଙ୍କରେ ବିଜେ ହୋଇ ଏହି ପଟୁଆରରେ ଯୋଗଦେଇଥାନ୍ତି ।

ଶ୍ରୀମନ୍ଦିରରେ ଅନତି ଦୂରରେ ଅବସ୍ଥିତ ଗଜପତି ମହାରାଜାଙ୍କ ଶ୍ରୀନଅର ସମ୍ମୁଖରେ ପଟୁଆର ପହଞ୍ଚିବାର ଅବ୍ୟବହିତ ପୂର୍ବରୁ ଶ୍ରୀମନ୍ଦିର ପୁରୋହିତଙ୍କ ଦ୍ୱାରା ରଥ ଅନୁକୂଳ ହୋମ ଶେଷ ହୋଇଥାଏ । ରଥ ବଢ଼େଇ (ବିଶ୍ୱକର୍ମା)ମାନେ ହୋମ ପରେ ଶାଢ଼ୀ ବନ୍ଧାଇଥାନ୍ତି । ପଟୁଆର ଆଗରେ ପୂଜାପଣ୍ଡା ତିନିଜଣ ଶ୍ରୀଜୀଉମାନଙ୍କର ଶ୍ରୀଅଙ୍ଗ ଲାଗି ଆଜ୍ଞାମାଳ ତିନି ରଥ ନିମନ୍ତେ ଦେଇସାରି ଫେରିଯିବା ପରେ ରଥ କାର୍ଯ୍ୟ ଅନୁକୂଳ ହୋଇଥାଏ । ଏହି ସମୟରେ ପଟୁଆର ମଧ୍ୟ ଆସି ଶ୍ରୀନଅର ସମ୍ମୁଖରେ ଛିଡ଼ା ହୋଇଥାଏ । ରଥ ଅନୁକୂଳ ସରିବା ପରେ ବଢ଼େଇମାନେ ରଥ କାର୍ଯ୍ୟରେ ଲାଗି ପଡ଼ିଥାନ୍ତି ଏବଂ ପଟୁଆର ନରେନ୍ଦ୍ର ପୁଷ୍କରିଣୀ ଅଭିମୁଖେ ଯାତ୍ରା କରେ ।

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ନୀତି ଏବଂ କାର୍ଯ୍ୟ ସହ ଅକ୍ଷୟ ତୃତୀୟା ଦିନଟି ବିଶେଷ ଭାବେ ଜଡ଼ିତ ଥିବାରୁ ଏହି ପର୍ବଟି ଶ୍ରୀଜଗନ୍ନାଥ ସର୍ବସ୍ୱ ଉତ୍କଳୀୟମାନଙ୍କର ହୃଦୟ ମଧ୍ୟରେ ଏକ ଧର୍ମ ଉତ୍ସବ ଭାବରେ ସ୍ୱତନ୍ତ୍ର ଆସନ ପାଇଛି ।

ଓଡ଼ିଶାରେ ପ୍ରତ୍ୟେକ ଶୁଭ କାର୍ଯ୍ୟ କରିବା ପାଇଁ ପାଞ୍ଜି ଦେଖି ଦିନ, ବାର ଓ ସମୟ ନିର୍ଘଣ୍ଟ କରାଯାଏ କିନ୍ତୁ ତା' ମଧ୍ୟରୁ ତିନୋଟି ଦିନ ଯେଉଁ ଦିନ କି ପାଞ୍ଜି, ପୋଥି ଦେଖିବା କିମ୍ବା ଗଣନା ଆଦି କରିବା ଆବଶ୍ୟକ ନାହିଁ । ଏହି ତିନିଗୋଟି ଦିନ ହେଲା ଅକ୍ଷୟ ତୃତୀୟା, ଦଶହରା ଓ ଶ୍ରୀପଞ୍ଚମୀ ।

---

ମାଟି ମଣ୍ଡପ ସାହି, ପୁରୀ ।



ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ଖୋର୍ଦ୍ଧା ଜିଲ୍ଲା ଉଦ୍‌ଘାଟନ ।

# ଭଦ୍ରକର ଐତିହ୍ୟ — ପ୍ରେରଣାର ଉତ୍ସ

## (ଭଦ୍ରକ ଜିଲ୍ଲା ଗଠନ ଉପଲକ୍ଷେ)

* ଶ୍ରୀ ବଂଶୀଧର ଭୋଇ

ଖ୍ରୀଷ୍ଟିୟ ସପ୍ତମ ଶତାବ୍ଦୀଠାରୁ ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଭଦ୍ରକର ଐତିହ୍ୟ ଅତୀବ ଜାଜ୍ଜ୍ୱଲ୍ୟମାନ । ଚୀନ୍ ପରିବ୍ରାଜକ ହୁଏନସାଂଙ୍କ ଭାରତ ଭ୍ରମଣ ବିବରଣୀରୁ ହର୍ଷଙ୍କ ଓଡ଼ିଶା ବିଜୟ ସମ୍ପର୍କରେ ଜଣାଯାଏ ଯେ ଗୌଡ଼ ଦେଶର ତତ୍କାଳୀନ ନରପତି ଶଶାଙ୍କଙ୍କ ରାଜ୍ୟର ସୀମା ବାଲେଶ୍ୱର ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇଥିଲା । ହର୍ଷ ତାଙ୍କୁ ପରାଜିତ କରି ତାଙ୍କ ରାଜ୍ୟ ଦଖଲ କରିଥିଲେ । ସମସ୍ତ ବାଲେଶ୍ୱର ଜିଲ୍ଲା ତାଙ୍କ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ପରିବ୍ରାଜକ ହୁଏନ୍‌ସାଂ ବାଲେଶ୍ୱର ଦେଇ ଦକ୍ଷିଣ ଦିଗକୁ ଯାତ୍ରା କରିବା ସମୟରେ ଭଦ୍ରକ ଦେଇ ବୌଦ୍ଧପୀଠ ଲଳିତଗିରି, ଉଦୟଗିରି ରତ୍ନଗିରି ଆଦିକୁ ଯାତ୍ରା କରିଥିବାର ସୂଚନା ମିଳେ । ହର୍ଷଙ୍କ ରାଜତ୍ୱ ସମୟରେ ଓଡ଼ିଶା ଓଡ୍ର, ଅଶୋକଙ୍କ ସମୟରେ କଳିଙ୍ଗ ବା ଉତ୍କଳ କୁହା ଯାଉଥିଲା ବେଳେ, ମୋଗଲ, ମରହଟ୍ଟା ରାଜତ୍ୱ ସମୟରୁ ଆଜିପର୍ଯ୍ୟନ୍ତ ଓଡ଼ିଶା ନାମରେ ପରିଚିତ । ତେଣୁ ସମୟ ଓ ଶାସନ ବଦଳିବା ସଙ୍ଗେ ସଙ୍ଗେ ଦେଶ ବିଦେଶର ଆଇନ୍ କାନୁନ୍ ରାଜନୈତିକ ଓ ସାମାଜିକ ଅବସ୍ଥା ମଧ୍ୟ ବଦଳି ଯାଉଛି । ଉଦାହରଣ ସ୍ୱରୂପ ଗଙ୍ଗବଂଶ ଓ ସୂର୍ଯ୍ୟବଂଶ ସମୟରେ ଆମ ପ୍ରଦେଶର ଯାହା ସୀମାରେଖା ଥିଲା ପୁଣି ମୋଗଲ ମରହଟ୍ଟାଙ୍କ ସମୟରେ ସମ୍ପୂର୍ଣ୍ଣ ବଦଳି ଗଲା । ଇଂରେଜମାନଙ୍କ ସମୟରେ ଯାହାଥିଲା ପୁଣି ଭାରତ ସ୍ୱାଧୀନ ହେବା ପରେ ଓଡ଼ିଶାର ଭୌଗଳିକ ଓ ରାଜନୈତିକ ମାନଚିତ୍ର ସମ୍ପୂର୍ଣ୍ଣ ଭିନ୍ନ ହେଲା ଅର୍ଥାତ ଗଡ଼ଜାତଗୁଡ଼ିକ ଓଡ଼ିଶାରେ ମିଶିଲା ।

ଇତିହାସରୁ ଜଣାଯାଏ ଯେତେବେଳେ ଯେଉଁ ଶାସକ ଓଡ଼ିଶାକୁ ଆସିଛନ୍ତି ସେମାନଙ୍କର ତୀକ୍ଷ୍ଣ ଦୃଷ୍ଟି ଥିଲା ଭଦ୍ରକ ଉପରେ କାରଣ ବଙ୍ଗଦେଶରୁ ପୁରୀ ଶ୍ରୀକ୍ଷେତ୍ର ଦେଇ ମାଡ୍ରାଜ୍ ପର୍ଯ୍ୟନ୍ତ ପରିବ୍ୟାପ୍ତ ପଥର ମଧ୍ୟ ସ୍ଥଳରେ ସାଳନ୍ଦୀ ନଦୀ କୂଳରେ ଭଦ୍ରକ ଅବସ୍ଥିତ ଥିବାରୁ ବିଦେଶୀ ଶାସକମାନଙ୍କର ଭଦ୍ରକ କ୍ରୀଡ଼ାସ୍ଥଳୀ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଉନବିଂଶ ଶତାବ୍ଦୀରୁ ଏପର୍ଯ୍ୟନ୍ତ ଭଦ୍ରକର ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ଅବସ୍ଥା କେବଳ ଭଦ୍ରକ ବାସୀ ନୁହଁ କି ଓଡ଼ିଶାବାସୀଙ୍କ ପାଇଁ ନୁହଁ ସାରା ଭାରତ ବାସୀଙ୍କ ପାଇଁ ଗୁରୁତ୍ୱ ପୂର୍ଣ୍ଣ।

୧୧୧୦ ଖ୍ରୀଷ୍ଟାବ୍ଦରୁ ୧୪୩୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଗଙ୍ଗବଂଶ ଓ ୧୪୩୫ ଖ୍ରୀଷ୍ଟାବ୍ଦରୁ ୧୫୬୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସୂର୍ଯ୍ୟବଂଶମାନଙ୍କର ସାମ୍ରାଜ୍ୟ ମଧ୍ୟରେ ଭଦ୍ରକ ଅନ୍ତର୍ଭୁକ୍ତ ଥିଲା । ଗଙ୍ଗ ନରପତି ଶାସନର ସୁବିଧା ନିମିତ୍ତ ଓଡ଼ିଶାକୁ ୩୧ଟି ଦଣ୍ଡପାଟରେ ବିଭକ୍ତ କରିଥିଲେ ସେଥି ମଧ୍ୟରୁ ଭଦ୍ରକ ଦଣ୍ଡପାଟ ଅନ୍ୟତମ ।

୧୫୬୮ରୁ ୧୫୭୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଭଦ୍ରକ ଆଫଗାନ ଶାସନ କର୍ତ୍ତାଙ୍କ ଅଧୀନରେ ରହିଲା । ବଙ୍ଗ ଦେଶର ଆଫଗାନ ଶାସନ କର୍ତ୍ତା ସୁଲେମାନ କରାନୀ ଓଡ଼ିଶାର ଭାଗ୍ୟ ବିଧାତା ହେଲେ । ୧୫୬୭ ଖ୍ରୀଷ୍ଟାବ୍ଦରେ ଭଦ୍ରକର ଅନତିଦୂର ଧାମନଗର ଥାନାର ଗେଙ୍ଗୁଟି ନଦୀ କୂଳସ୍ଥିତ ଗୋହିରା ଟିକିରିଠାରେ ଗଜପତି ମୁକୁନ୍ଦ ହରିଚନ୍ଦନଙ୍କ ସହିତ ସୁଲେମାନଙ୍କର ଯୁଦ୍ଧ ହୋଇଥିଲା । ଗଜପତି ପରାଜିତ ହେଲେ ସତ କିନ୍ତୁ ବୀରତ୍ୱର ପରାକାଷ୍ଠା ସେହିଠାରେ ସେ ନିହତ ହେଲେ । ସେଥିଲା ଭଦ୍ରକର ଐତିହାସିକ ଯୁଦ୍ଧ ଏବଂ ରାଜତନ୍ତ୍ରର ସବୁଠାରୁ ବଡ଼ଯୁଦ୍ଧ ଯେଉଁ ଯୁଦ୍ଧରେ ସ୍ୱାଧୀନଚେତା, ସ୍ୱାଭିମାନୀ ମୁକୁନ୍ଦ ହରିଚନ୍ଦନଙ୍କ ନିଧନ ଯୋଗୁଁ ଓଡ଼ିଶାର ସ୍ୱାଧୀନତା ଲୋପ ପାଇଲା ।

ସୁଲେମାନଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ଦାଉଦ୍ ଓଡ଼ିଶାର ଶାସନ କର୍ତ୍ତା ହେଲେ । ଆକବର ସେତେବେଳେ ଦିଲ୍ଲୀର ମୋଗଲ ବାଦଶାହ । ଦାଉଦ ମୋଗଲମାନଙ୍କର ବଶ୍ୟତା ସ୍ୱୀକାର ନକରି ବିରୁଦ୍ଧାଚରଣ କଲେ ଫଳରେ ୧୫୭୫ ଖ୍ରୀଷ୍ଟାବ୍ଦରେ ଆକବର ତାଙ୍କ ସେନାପତି ମୁନିମ୍ ଖାଁ ଓ ତୋଡ଼ର–ମଲ୍ଲଙ୍କୁ ତାଙ୍କ ସହିତ ଯୁଦ୍ଧ କରିବାକୁ ପଠାଇଲେ । ଦାଉଦ୍ ପରାଜୟ ସ୍ୱୀକାର କରି ମୋଗଲ ବାଦଶାହଙ୍କ ଅଧୀନରେ ଓଡ଼ିଶାର ଶାସନ କର୍ତ୍ତା ହୋଇ ରହିଲେ ।

ଶାସନଗତ ସୁବିଧା ଦୃଷ୍ଟିରୁ ୧୫୭୫ ଖ୍ରୀଷ୍ଟାବ୍ଦ ଏପ୍ରିଲ ୧୨ ତାରିଖରେ ଓଡ଼ିଶା ୩ଟି ସରକାରରେ ବିଭକ୍ତ ହୋଇଥିଲା । ଯଥା :– କଟକ, ଜଳେଶ୍ୱର ଓ ଭଦ୍ରକ । କଟକ ସରକାର ରହିଲା ଦାଉଦଙ୍କ ଅଧୀନରେ । ଭଦ୍ରକ ଓ ଜଳେଶ୍ୱର ରହିଲା ମୋଗଲ ବାଦଶାହଙ୍କ ପ୍ରତ୍ୟକ୍ଷ ଶାସନାଧୀନରେ ଦାଉଦ ଓଡ଼ିଶାରେ ଶାସନ କର୍ତ୍ତା ଥିବା ସମୟରେ ଭଦ୍ରକ ସେନା ଛାଉଣୀର କେନ୍ଦ୍ରସ୍ଥଳ ଥିଲା ଏବଂ ନାଜିର ବାହାଦୁର ଭଦ୍ରକର ପ୍ରଥମ ମୋଗଲ ଶାସକ ଥିଲେ ।

୧୫୭୮ ଖ୍ରୀଷ୍ଟାବ୍ଦଠାରୁ ଆକବରଙ୍କ ଅଧୀନରେ ଓଡ଼ିଶା ଏକ ସ୍ୱତନ୍ତ୍ର ସୁବା ବା ପ୍ରଦେଶ ରୂପେ ଶାସିତ ହେଲା ଏହି ସମୟରେ ତୋଡ଼ରମଲ୍ଲ ଓଡ଼ିଶାରେ ବନ୍ଦୋବସ୍ତ କରାଇ ଏହାକୁ ୫ଟି ସରକାରରେ ବିଭକ୍ତ କରାଇଥିଲେ ଯଥା :– ଜଳେଶ୍ୱର, ଭଦ୍ରକ, କଟକ, ପୁରୀ, କଳିଙ୍ଗ ଦଣ୍ଡପାଟ ଓ ରାଜମହେନ୍ଦ୍ରୀ । ଭଦ୍ରକ ସରକାରର ବିସ୍ତାର ବାଲେଶ୍ୱର ଜିଲ୍ଲା ହିଁ ଥିଲା ଏହାର ହେଡ଼କ୍ୱାଟର

ଭଦ୍ରକ ଥିଲା ଏବଂ ୭ଟି ମାହାଲର ଭଦ୍ରକ ଏକ ଛୋଟ ସରକାର ଥିଲା ଯଥା :- ବସ୍ତୁବା, ଜଉଙ୍ଗହରି, ହାବେଲି, ସହନସ୍ଥ, କାରମାନ, କଦମ୍ବ ଓ ମଜକୁରନ୍ । ଏହି ସରକାରରୁ ରାଜସ୍ୱ ମିଳୁଥିଲା ୧୮,୬୭,୧୭୦ 'ଦାମ' ଏବଂ ଏହାର ମୁଖ୍ୟ କାର୍ଯ୍ୟାଳୟ ଥିଲା ଭଦ୍ରକ ଓ କାଉପୁର ।

୧୭୫୧ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ମରହଟ୍ଟା ସାମ୍ରାଜ୍ୟ ପ୍ରତିଷ୍ଠା ହେଲା । ଭଦ୍ରକ ମରହଟ୍ଟା ଶାସନାଧୀନରେ ଥିଲା । ଶାସନଗତ ସୁବିଧା ନିମନ୍ତେ ମୋଗଲବନ୍ଦୀ ଅଞ୍ଚଳକୁ ମରହଟ୍ଟାମାନେ ୪ଟି ଚକଲାରେ ବିଭକ୍ତ କରିଥିଲେ ।

୧୮୦୩ରେ ଇଂରେଜମାନେ ମରହଟ୍ଟାମାନଙ୍କୁ ପରାଜିତ କରି ଦେଓଗାଁ ଚୁକ୍ତି ଅନୁସାରେ ଓଡ଼ିଶାରେ ଶାସନ ପ୍ରତିଷ୍ଠା କଲେ । ୧୮୦୪ରେ ମୋଗଲବନ୍ଦୀ ଅଞ୍ଚଳକୁ ମିଶାଇ ଦୁଇଟି ଡିଭିଜନରେ ବିଭକ୍ତ କଲେ ଏବଂ କଟକ ବାଲେଶ୍ୱରକୁ ମିଶାଇ ଗୋଟିଏ ଡିଭିଜନ ହେଲା ଏହାର ମୁଖ୍ୟ କାର୍ଯ୍ୟାଳୟ ଥିଲା କଟକରେ ।

ଶାସନର ସୁବିଧା ପାଇଁ ଇଂରେଜ ସରକାର ବାଲେଶ୍ୱର ଜିଲ୍ଲାକୁ ଦୁଇଟି ସବଡିଭିଜନରେ ବିଭକ୍ତ କଲେ (୧) ସଦର ବା ହେଡ୍‌କ୍ୱାଟରସ୍ ସବଡିଭିଜନ (୨) ଭଦ୍ରକ ସବଡିଭିଜନ ତେଣୁ ବାଲେଶ୍ୱର, ବସ୍ତା, ଜଳେଶ୍ୱର, ବାଲିଆପାଳ ଓ ସୋରୋ । ଏହି ପାଞ୍ଚଟି ଥାନା ବା ସର୍କଲକୁ ସଦର ଡିଭିଜନରେ ରହିଲା । ୧୮୭୦-୭୨ ଜନଗଣନାରୁ ଜଣାଯାଏ ଯେ ବାଲେଶ୍ୱର ସବଡିଭିଜନର ମୋଟ ଲୋକସଂଖ୍ୟା ଥିଲା ୩୯୯,୭୭୯, ପରିସୀମା ଥିଲା ୧୧୫୭ ସ୍କୋୟାର ମାଇଲ ଏବଂ ଗ୍ରାମ ସଂଖ୍ୟା ଥିଲା ମୋଟ ୨୦୭୨ଟି । ଏହି ସବଡିଭିଜନ ଅଧୀନରେ ୧୧ଟି ପ୍ରଶାସନିକ କାର୍ଯ୍ୟାଳୟ ଥିଲା ଓ ୪୦୬ଜଣ ରେଭିନ୍ୟୁ ଅଫିସର ଓ ଗ୍ରାମ୍ୟ ପୋଲିସ ୧୧୧୮ ଜଣ କାର୍ଯ୍ୟ କରୁଥିଲେ ।

୧୮୪୭ ମସିହା ନଭେମ୍ବରରେ ଭଦ୍ରକକୁ ସବଡିଭିଜନ ରୂପେ ଘୋଷଣା କରାଗଲା । ଭଦ୍ରକ, ବାସୁଦେବପୁର, ଧାମନଗର ଓ ମଟୋ (Mutoh) ଏହି ଚାରୋଟି ଥାନା ବା ସର୍କଲ ଭଦ୍ରକ ଅଧୀନରେ ରହିଲା ୧୮୭୦-୭୧ ଜନ ଗଣନା ଅନୁସାରେ ଏହି ଭଦ୍ରକ ସବଡିଭିଜନର ଲୋକ ସଂଖ୍ୟା ଥିଲ, ୩,୩୮,୬୨୭ ଏବଂ ପରିସୀମା ୯୦୯ ସ୍କୋୟାର (ବର୍ଗ) ମାଇଲ ଥିଲା । ମୋଟ ଗ୍ରାମ ସଂଖ୍ୟା ଥିଲା ୧୧୯୪ । ଦୁଇଟି ପ୍ରଶାସନିକ ରେଭିନ୍ୟୁ କୋର୍ଟ ଭଦ୍ରକ ସବଡିଭିଜନ ଅଧୀନରେ କାର୍ଯ୍ୟ କରୁଥିଲା ଏବଂ ସ୍ଥାୟୀ ପୋଲିସ ଫୋର୍ସ ୧୪୬ ଜଣ ଓ ଗ୍ରାମରକ୍ଷୀ ୧୨୦୨ ଜଣ ଏହି ଡିଭିଜନରେ କାର୍ଯ୍ୟ କରୁଥିଲେ ।

ତତ୍କାଳୀନ ଇଂରେଜ ସରକାର ବାଲେଶ୍ୱର ଜିଲ୍ଲାରେ ଥିବା ତିନୋଟି ସ୍ଥାନକୁ ସହର ବୋଲି ଘୋଷଣା କରିଥିଲେ (୧) ଭଦ୍ରକ, ଜଳେଶ୍ୱର ଓ ସୋରୋ ।

The only minor towns of any importance are the following :- (1) Bhadrak, the head quarters of the Subdivision of the same name, situated on the high road between Calcutta and Cuttack. It is not returned in the census report among the list of towns containing more than five thousand inhabitants, but in 1870 its papulation was estimated as follows :- Male 3455 and Females 4346; total 7801.

ସାମାଜିକ କ୍ଷେତ୍ରରେ ଭଦ୍ରକର ଅବଦାନ ଚିର ସ୍ମରଣୀୟ । ଇତିହାସରୁ ଜଣାଯାଏ ସେତେବେଳେ ଶିକ୍ଷାକ୍ଷେତ୍ରରେ ମଧ୍ୟ ଭଦ୍ରକ ଅଗ୍ରଗଣ୍ୟ ଥିଲା । ୧୮୭୨ ମସିହାରେ Middle Class English School ଥିଲା । ଏହାର ଛାତ୍ର ସଂଖ୍ୟା ଥିଲା ୯୪ । ତନ୍ମଧ୍ୟରୁ ମୁସଲମାନଙ୍କ ଛାତ୍ର ସଂଖ୍ୟା ୧୧ ଏବଂ ସ୍କୁଲର ସମ୍ପାଦକ ଥିଲେ ଜଣେ ମୁସଲମାନ ।

ସ୍ୱାସ୍ଥ୍ୟ ସେବା କ୍ଷେତ୍ରରେ ଭଦ୍ରକ ମଧ୍ୟ ନ୍ୟୁନ ନଥିଲା । ୧୮୬୮ ଫେବ୍ରୁୟାରୀ ମାସରେ ଭଦ୍ରକ ଡାକ୍ତରଖାନା ସ୍ଥାପିତ ହେଲା । ୧୮୭୧ ମସିହାରେ ରୋଗୀମାନଙ୍କ ସଂଖ୍ୟା ଥିଲା ୧୧୭୦ । ପ୍ରତିଦିନ ହାରାହାରି ରୋଗୀ ସଂଖ୍ୟା ଥିଲା ୧୪-୧୬ ।

ସାଂସ୍କୃତିକ କ୍ଷେତ୍ରରେ ଭଦ୍ରକର ଅବଦାନ ଅତୁଳନୀୟ । ୧୫୧୦ ଖ୍ରୀଷ୍ଟାବ୍ଦରେ ଶ୍ରୀ ଚୈତନ୍ୟ ଦେବଙ୍କ ପୁରୀ ଆଗମନ ସମୟରେ ଭଦ୍ରକରେ ପଦାର୍ପଣ କରି କୁଆଁସ ଓ ସଛିଆ ଗ୍ରାମରେ ଅବସ୍ଥାନ କରିଥିଲେ । ଶ୍ରୀ ଚୈତନ୍ୟ ଦେବ ଛାଡ଼ି ଯାଇଥିବା ଶେଯ (କନ୍ଥା) ଏବେମଧ୍ୟ ସଛିଆ ଗ୍ରାମସ୍ଥିତ ଶ୍ରୀ ମଦନ ମୋହନ ମନ୍ଦିରରେ ସଂରକ୍ଷିତ ହୋଇ ରହିଛି । କୁଆଁସଠାରେ ଯେଉଁ ବଟବୃକ୍ଷ ମୂଳରେ ଶ୍ରୀ ଚୈତନ୍ୟ ଦେବ ବିଶ୍ରାମ ନେଇଥିଲେ ତାହା ଅଧୁନା ବଂଶୀବଟ ନାମରେ ଖ୍ୟାତ । ସେଠାରେ ତାଙ୍କ ପାଦପଦ୍ମ ଏବେ ବି ପୂଜା ପାଉଛି । ଷୋଡ଼ଶ ଶତାବ୍ଦୀରେ ଗୁରୁନାନକ ଭଦ୍ରକରେ ଆସି ପହଞ୍ଚି ଥିଲେ । ସେ ଯେଉଁ ସ୍ଥାନରେ ଅବସ୍ଥାନ କରିଥିଲେ ତାହା ନାନକ ଡିହ ନାମରେ ବିଦିତ । ଉକ୍ତ ସ୍ଥାନ ଭଦ୍ରକ ପୁରୁଣା ବଜାର ନିକଟସ୍ଥ ସଙ୍ଗତ ଗ୍ରାମରେ ଅବସ୍ଥିତ । ପ୍ରତି ବର୍ଷ କାର୍ତ୍ତିକ ପୂର୍ଣ୍ଣିମା ଦିନ ଏଠାରେ ଗୋଟିଏ ମେଳା ହୁଏ । ନାନକଙ୍କ ପୂଜା ଅର୍ଚ୍ଚନା ନିମିତ୍ତ ବହୁ ସଂଖ୍ୟକ ଶିଖ ସମ୍ପ୍ରଦାୟର ଲୋକମାନେ ବିଭିନ୍ନ ସ୍ଥାନରୁ ଆସିଥାଆନ୍ତି । ଅନ୍ୟାନ୍ୟ ଗୁରୁଦ୍ୱାର ପରି ଏଠାରେ ପ୍ରତିଦିନ ସେବାପୂଜା ଅନୁଷ୍ଠିତ ହୁଏ ।

ସେହିପରି ଅଷ୍ଟାଦଶ ଶତାବ୍ଦୀରୁ ବିଂଶ ଶତାବ୍ଦୀ ମଧ୍ୟରେ ସାହିତ୍ୟ କ୍ଷେତ୍ରରେ ଭଦ୍ରକର ଅବଦାନ ଅବିସ୍ମରଣୀୟ । ବଂଶୀବଲ୍ଲଭ ଗୋସ୍ୱାମୀଙ୍କ ରଚିତ ଭିଲ ତାମସା, ରାଧାକୃଷ୍ଣ ତାମସା, ଚଣ୍ଡୀ ତାମସା, ଯୋଗୀ ତାମସା, ଫକୀର ତାମସା, ରୋହିଣୀମଙ୍ଗଳ ତାମସା ଏବଂ ମୋଗଲ ତାମସା ପ୍ରଭୃତି ଭଦ୍ରକର ସାହିତ୍ୟ ଜଗତକୁ ଉଜ୍ଜୀବିତ କରିଛି । ସାହିତ୍ୟ ଦରବାରରେ ଲେଖନୀ ଚଳାଇ ଭଦ୍ରକର ଐତିହ୍ୟକୁ ବିଶ୍ୱଦରବାରରେ ପହଞ୍ଚାଇବା ଭୂମିକାରେ କବି ଶେଖର ଚିନ୍ତାମଣି, କାନ୍ତକବି ଲକ୍ଷ୍ମୀକାନ୍ତ, ଗଣକବି ଜଗନ୍ନାଥ ପାଣି, ବିପ୍ଳବି କବି ବାଞ୍ଛାନିଧି, ଏକ ଧାରାରେ ସାହିତ୍ୟିକ, ଔପନ୍ୟାସିକ ଏବଂ ଐତିହାସିକ ଡଃ ହରେକୃଷ୍ଣ ମହତାବ, ଶ୍ରୀ ନୀଳମଣି ରାଉତରାଏ, ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ପ୍ରଭୃତିଙ୍କ ସାଧନା ଭଦ୍ରକର ଐତିହ୍ୟକୁ ଚିର ଅମର କରି ରଖିବ ଅଧ୍ୟାପନା କ୍ଷେତ୍ରରେ

ଶିକ୍ଷାବିତ୍‌ମାନଙ୍କ ମଧ୍ୟରେ ଅଧ୍ୟାପକ ଶତ୍ରୁଘ୍ନ ନାଥ, ଦୀନବନ୍ଧୁ ପାଣିଗ୍ରାହୀ, ବୈଜ୍ଞାନିକ ଡଃ ଗୋକୁଳାନାନ୍ଦ ମହାପାତ୍ର ଓ ଡଃ ମହେନ୍ଦ୍ର ରାଉତ ଭଦ୍ରକର ଐତିହ୍ୟକୁ ସାରା ଭାରତରେ ପ୍ରତିଷ୍ଠିତ କରିଛନ୍ତି ।

ଜାତୀୟ ସ୍ୱାଧୀନତା ସଂଗ୍ରାମରେ ଏବଂ ଭାରତୀୟ ରାଜନୀତି ଭୂମିକାରେ ଭଦ୍ରକର ବରପୁତ୍ର ମାନଙ୍କମଧ୍ୟରେ ସ୍ୱର୍ଗତ ହରେକୃଷ୍ଣ ମହତାବ, ସ୍ୱର୍ଗତ ମୌଲବୀ ମହମ୍ମଦ ହନିଫ, ସ୍ୱର୍ଗତ ଭାଗବତ ସାହୁ ପ୍ରଭୃତିଙ୍କ ଅବଦାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ଭାରତରେ ଲବଣ ଆନ୍ଦୋଳନ ଏବଂ ଲବଣ ସତ୍ୟାଗ୍ରହ ଭୂମିକାରେ ଭଦ୍ରକର ଅବଦାନ ଅବର୍ଣ୍ଣନୀୟ । ଭଦ୍ରକ ସବଡିଭିଜନର ବାସୁଦେବପୁର ଥାନା ଅନ୍ତର୍ଗତ ଇରମ ଓ ଲୁଣିଆ ଭୂମିକାରେ ୨୯ ଜଣ ଏହି ଅନ୍ଦୋଳନରେ ପ୍ରାଣବଳି ଦେଇ ଶହୀଦ ହୋଇଛନ୍ତି । ୧୯୪୨ ସେପ୍ଟେମ୍ବର ୨୮ ଇରମ ଭାରତର ଦ୍ୱିତୀୟ "ଜାଲିୟାନ ବାଗ" କହିଲେ ଅତ୍ୟୁକ୍ତି ହେବ ନାହିଁ । ଇଂରେଜମାନଙ୍କ ବିରୁଦ୍ଧରେ ଭାରତରେ ଚାଲିଥିବା ଅସହଯୋଗ ଆନ୍ଦୋଳନରେ ଭଦ୍ରକ ତା'ର ଐତିହ୍ୟକୁ ନିଖୁଣ ଭାବରେ ବଜାଇ ରଖିଛି । ୧୯୨୧ ମସିହା ମାର୍ଚ୍ଚ ୨୪ ତାରିଖ ରାତିରେ ଅସହଯୋଗ ଆନ୍ଦୋଳନର ପୁରୋଧା ମହାତ୍ମାଗାନ୍ଧୀ ଭଦ୍ରକରେ ପହଞ୍ଚିଥିଲେ ସେଠାରେ ସେ ୩ ଦିନ ରହି ଅସହଯୋଗ ଆନ୍ଦୋଳନକୁ ସକ୍ରିୟ କରି ସେହି ୨୬ ତାରିଖ ଦିନ ଭଦ୍ରକରୁ ବିଦାୟ ନେଇଥିଲେ ଏବଂ ପୁଣି ଥରେ ୧୯୩୪ ମସିହାରେ ଗାନ୍ଧିଜୀ ପୁରୀ ଶ୍ରୀକ୍ଷେତ୍ରରୁ ପଦଯାତ୍ରା ଆରମ୍ଭକରି ବରି ଯାଜପୁର ଦେଇ ଭଦ୍ରକରେ ପହଞ୍ଚିଥିଲେ ।

ସୁତରାଂ ହର୍ଷଙ୍କ ସମୟରୁ ଏପର୍ଯ୍ୟନ୍ତ ଭଦ୍ରକ ସାହିତ୍ୟ, ସାଂସ୍କୃତିକ, ଶିକ୍ଷା ଓ ବିଜ୍ଞାନ କ୍ଷେତ୍ରରେ ନିଜରଐତିହ୍ୟକୁପ୍ରତିପାଦିତ କରି ଆସିଛି । ତେଣୁ ଏହି ପବିତ୍ର ଉତ୍କଳ ଦିବସର ଶୁଭ ଲଗ୍ନରେ କଳିଙ୍ଗର ବରପୁତ୍ର, ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ସ୍ୱନାମଧନ୍ୟ ଜନପ୍ରିୟ ମୁଖ୍ୟମନ୍ତ୍ରୀ ବିଜୁବାବୁ ଦୀର୍ଘ ୪୬ ବର୍ଷପରେ ଭଦ୍ରକକୁ ଏକ ଜିଲ୍ଲାଭାବେ ଓଡ଼ିଶାର ମାନଚିତ୍ରରେ ସ୍ଥାନ ଦେଇଥିବାରୁ ଭଦ୍ରକବାସୀଙ୍କ ହୃଦୟରେ ସେ ଚିର ସ୍ମରଣୀୟ ହୋଇ ରହିବେ ।

---

ଓଡ଼ିଶା ରାଜ୍ୟ ଅଭିଲେଖାଗାର,
ଭୁବନେଶ୍ୱର ।



ଫୁଲବାଣୀଠାରେ ଉତ୍କଳ ଦିବସ ଉପଲକ୍ଷେ ଆୟୋଜିତ ଏକ ଉତ୍ସବରେ ପଞ୍ଚାୟତିରାଜ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପଦ୍ମନାଭ ବେହେରା ଉଦ୍‌ବୋଧନ ଦେଉଛନ୍ତି ।

# ଶ୍ରମ ଓ ନିୟୋଜନ ବିଭାଗ
# କାର୍ଯ୍ୟକ୍ରମ ଓ ସଫଳତା

- ବର୍ତ୍ତମାନର ସରକାର ଶାସନ ଭାର ଗ୍ରହଣ କରିବା ପରେ ଦରିଦ୍ର ଓ ଅବହେଳିତ ଶ୍ରମିକମାନଙ୍କ ଦୁରାବସ୍ଥାକୁ ହୃଦୟଙ୍ଗମ କରି ଅଣକୁଶଳୀ ଶ୍ରମିକମାନଙ୍କର ସର୍ବନିମ୍ନ ଦୈନିକ ମଜୁରି ୧୧ ଟଙ୍କାରୁ ୨୫ ଟଙ୍କାକୁ ବୃଦ୍ଧି କରି ଶ୍ରମିକ ଶ୍ରେଣୀର ଉନ୍ନତିକଳ୍ପେ ବଳିଷ୍ଠ ପଦକ୍ଷେପ ଗ୍ରହଣ କରିଛନ୍ତି । ପୁନଶ୍ଚ ଅର୍ଦ୍ଧ କୁଶଳୀ ଓ ଉଚ୍ଚ କୁଶଳୀ ଶ୍ରମିକମାନଙ୍କର ସର୍ବନିମ୍ନ ଦୈନିକ ମଜୁରି ଯଥାକ୍ରମେ ୧୨ ଟଙ୍କା ୭୫ ପଇସାରୁ ୩୦ ଟଙ୍କାକୁ, ୧୬ ଟଙ୍କାରୁ ୩୫ ଟଙ୍କାକୁ ଏବଂ ୨୦ ଟଙ୍କାରୁ ୪୦ ଟଙ୍କାକୁ ବୃଦ୍ଧି କରାଯାଇଛି । ନିୟମିତ ନିରୀକ୍ଷଣ କରାଯାଇ ୧,୨୯୯ଟି କମ୍ ମଜୁରି ଦିଆଯାଉଥିବା ଘଟଣାରେ ମୋକଦ୍ଦମା ରୁଜୁ କରାଯାଇ ଶ୍ରମିକମାନଙ୍କୁ ସେମାନଙ୍କର ନ୍ୟାଯ୍ୟ ପ୍ରାପ୍ୟ ବାବଦରେ ଟ ୨,୫,୩୦,୦୬୬·୮୧ ପଇସା, କ୍ଷତିପୂରଣ ବାବଦରେ ଟ ୪,୬୬,୯୪,୧୮୫·୩୪ ପଇସା ଏବଂ ଗ୍ରାଚ୍ୟୁଇଟି ବାବଦରେ ଟ ୩,୯୯,୬୮୯·୮୩ ପଇସା ପ୍ରଦାନ କରାଯାଇଛି ।

- ଏହି ବିଭାଗର ସମୟୋପଯୋଗୀ ଫଳପ୍ରଦ ପଦକ୍ଷେପ ଯୋଗୁଁ ପୂର୍ବ ବର୍ଷମାନଙ୍କ ତୁଳନାରେ ବିଗତ ତିନି ବର୍ଷରେ ଶିଳ୍ପ କର୍ମଚାରୀମାନଙ୍କର ଧର୍ମଘଟ ଓ ତଦ୍‌ଜନିତ ନଷ୍ଟହୋଇଥିବା ଶ୍ରମ ଦିବସର ପରିମାଣ ଉଲ୍ଲେଖଯୋଗ୍ୟ ଭାବେ ହ୍ରାସ ପାଇଛି ।

- ବିଗତ ତିନି ବର୍ଷରେ ୩୦୬ଟି ନୂତନ କାରଖାନା ଓ ୫୪ଟି ନୂତନ ବଏଲରକୁ ରେଜେଷ୍ଟ୍ରିଭୁକ୍ତ କରାଯାଇଛି । କାରଖାନାମାନଙ୍କରେ ନିରାପତ୍ତା ସମ୍ପର୍କିତ ସଚେତନତା ବୃଦ୍ଧି କରିବା ଉଦ୍ଦେଶ୍ୟରେ ନିରାପତ୍ତା ପୁରସ୍କାର ପ୍ରଦାନ ଓ ୩୬ଟି ନିରାପତ୍ତା ପ୍ରଶିକ୍ଷଣ କାର୍ଯ୍ୟକ୍ରମ ମାଧ୍ୟମରେ କର୍ମଚାରୀମାନଙ୍କୁ ଉପଯୁକ୍ତ ତାଲିମ ପ୍ରଦାନ କରାଯାଇଛି ।

- ଏହି ସମୟ ମଧ୍ୟରେ ରାଜ୍ୟରେ ଶିଳ୍ପ ଶ୍ରମିକ ଓ ଅନ୍ୟାନ୍ୟ କର୍ମଚାରୀଙ୍କର ୮୬୦ଟି ଶିଳ୍ପ ବିବାଦ ଫଇସଲା କରାଯାଇ ସେମାନଙ୍କୁ ଉଚିତ ନ୍ୟାୟ ପ୍ରଦାନ କରାଯାଇଛି ।

- କର୍ମଚାରୀ ରାଜ୍ୟ ବୀମା ଯୋଜନା ଅଧୀନରେ ଥିବା ୪ ଗୋଟି ଚିକିତ୍ସାଳୟ ଓ ୪୯ ଗୋଟି ଡାକ୍ତରଖାନା ଜରିଆରେ ବିଗତ ତିନି ବର୍ଷରେ ସର୍ବମୋଟ ୫୬,୪୪,୮୯୮ ଜଣ ବୀମାଭୁକ୍ତ ଶ୍ରମିକଙ୍କୁ ବିଭିନ୍ନ ପ୍ରକାର ଚିକିତ୍ସା ଯୋଗାଇ ଦିଆଯାଇଛି ।

- ଏତଦ୍ ବ୍ୟତୀତ ଏହି ଯୋଜନା ମାଧ୍ୟମରେ ବୀମାଭୁକ୍ତ ଶ୍ରମିକମାନଙ୍କୁ ଅସୁସ୍ଥତାକାଳୀନ ସୁବିଧା, ପ୍ରସୂତିକାଳୀନ ସୁବିଧା, ଅସାମର୍ଥ୍ୟ ସୁବିଧା, ଅନ୍ତ୍ୟେଷ୍ଟିକାଳୀନ ସୁବିଧା ଓ ସେମାନଙ୍କ ଆଶ୍ରିତମାନଙ୍କୁ ସମୁଚିତ ସୁବିଧା ଇତ୍ୟାଦି ଯୋଗାଇ ଦିଆଯାଇଛି ।

- ରାଜ୍ୟରେ ଥିବା ବିଭିନ୍ନ ନିୟୋଜନ କାର୍ଯ୍ୟାଳୟ ଜରିଆରେ ଉକ୍ତ ସମୟ ମଧ୍ୟରେ ସର୍ବମୋଟ ୨୭,୮୫୭ ଜଣ ବେକାରଙ୍କୁ କର୍ମ ସଂସ୍ଥାନ ଯୋଗାଇ ଦିଆଯାଇଛି ।



କବିସମ୍ରାଟ ଉପେନ୍ଦ୍ର ଭଞ୍ଜ

( ୧୬୭୦-୧୭୨୦ )

# ଅଳି ଶ୍ରଦ୍ଧାଞ୍ଜଳି

* ସତୀଶ ସାହୁ

ରାଜ ରାଜ କବି ହେ
ବୀରବର ଉପେନ୍ଦ୍ର ଭଞ୍ଜ
ରାସ ରସରେ ରଚିଲ କାବ୍ୟ କୋଣାରକ ହେ
ବୀରବର ଉପେନ୍ଦ୍ର ଭଞ୍ଜ..........(ଘୋଷା)

ରସ ରସ ରସେ ରସି — ଛନ୍ଦି ଛନ୍ଦି ଛନ୍ଦରାଶି
ଶୃଙ୍ଗାର ରସ ଭାଷି — ରସାଣି ରସାଳ ରାଶି
ରଚିକି କୀରତି କଲ
ରଚିଲ ଅମୂଲ ମୂଲ
ରାଜ ରାଜ କବି ପଣେ ରଖିଲ ଯଶ ହେ
ବୀରବର ଉପେନ୍ଦ୍ର ଭଞ୍ଜ............(୧)

ରଚିଲ ରସ ମଞ୍ଜରୀ — କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ
ପ୍ରେମଲୀଳାମୃତ ରସ — ବଇଦେହୀଶ ବିଳାସ
ରଚି ପ୍ରେମ ସୁଧାନିଧି
ରସଲେଖା, ରସନିଧି
ରଚିଲ ଲାବଣ୍ୟବତୀ ରସ ପଞ୍ଚକ ହେ
ବୀରବର ଉପେନ୍ଦ୍ର ଭଞ୍ଜ............(୨)

ରଚିଲ ରସ ମାଣିକ — ଅବନା, ମହାଯମକ
ଚିତ୍ରକ, ପ୍ରାନ୍ତ ଯମକ — ଏକାକ୍ଷର, ନିରୋଷ୍ଠକ
ରଚିଲ ଆଦ୍ୟ ଯମକ
ରସାଣିଲ ସରୋଷ୍ଠକ
ଅଦ୍ଭୁତ ଉପମା ଯୋଡ଼ି ଯମକ ହେ
ବୀରବର ଉପେନ୍ଦ୍ର ଭଞ୍ଜ............(୩)

ରାମ ତାରକ ସୁମରି — ଅଳଙ୍କାରେ ଅଳଙ୍କାରୀ
ରାଗ ରାଗିଣୀକୁ ଧରି — ଅମାପ ଉପମା ଭରି
ରାଶି ରାଶି ପଶିଲ
ରଖିଲ ଯମକ ମାଳ
ରାଇଜେ ରାଇଜେ ଦେଲ ଅମୂଲ୍ୟ ରସ ହେ
ବୀରବର ଉପେନ୍ଦ୍ର ଭଞ୍ଜ...........(୪)

ରାଜ ରାଜ କବିବର — ଉପଇନ୍ଦ୍ର ବୀରବର
ରଖ ଅଳି ସତୀଶର — ଫେରିଆସ ପୁନ୍ମସର
ରଚିବ ନୂଆ କବିତା
ରଖି ନୂଆ ନୂଆ କଥା
ରସରେ ଗଢ଼ିବ ପୁଣି କାବ୍ୟ କୋଣାରକ ହେ
ବୀରବର ଉପେନ୍ଦ୍ର ଭଞ୍ଜ..........(୫)
ରାସ ରସରେ ରଚିଲ କାବ୍ୟ କୋଣାରକ ହେ
ବୀରବର ଉପେନ୍ଦ୍ର ଭଞ୍ଜ..........

ଭି.ଆର୍.-୬୩,
ୟୁନିଟ୍-୬, ଭୁବନେଶ୍ୱର।



# ଭଞ୍ଜ ସଙ୍ଗୀତମାଳା — ଏକ ଅଧ୍ୟୟନ

* ଅଧ୍ୟାପକ ଡଃ ଶରତ ଚନ୍ଦ୍ର ରଥ

ଭଞ୍ଜ କହିଲେ ସମସ୍ତେ ଉପେନ୍ଦ୍ର ଭଞ୍ଜଙ୍କୁ ହିଁ ବୁଝିଥାନ୍ତି । ସେ କେବଳ ଭଞ୍ଜ ବଂଶର ମଥାର ମଣି ହୋଇ ରହିନାହାନ୍ତି, ସେ ହୋଇଛନ୍ତି ସାରା ଓଡ଼ିଶାର ମଉଡ଼ମଣି, ଓଡ଼ିଆ ସାହିତ୍ୟ ଆକାଶର ଶୁଭ୍ର ସୁନ୍ଦର ଧ୍ରୁବ ତାରା । ଜୀବନକୁ ଚିହ୍ନି ଚିହ୍ନାଇ ଦେବାରେ ତାଙ୍କର ସିଦ୍ଧହସ୍ତତା ଅବିସମ୍ବାଦିତ । ସାହିତ୍ୟ ସ୍ରଷ୍ଟାର ଚର୍ଯ୍ୟା କରେ ନାହିଁ, ଜୀବନର ନିରାଜନା କରେ, ଏହି ପ୍ରାଚ୍ୟ ସାହିତ୍ୟିକ ଆଦର୍ଶ ପ୍ରତି ତାଙ୍କର ଯେଉଁ ଅନୁରକ୍ତି ଓ ଆନ୍ତରିକତା ଥିଲା, ତାହାର ପଟ୍ଟାନ୍ତର ନାହିଁ । ତାଙ୍କର ଶବ୍ଦର ଝଙ୍କାର ଭିତରେ ଫୁଟିଉଠିଛି ଜୀବନ ପ୍ରତି ଯେଉଁ ଅନୁକୂଳ ଆଭିମୁଖ୍ୟ, ତାହାର କଳନା ନାହିଁ । ଯେତେ ପଢ଼ିଲେ କ୍ଳାନ୍ତି ଆସେ ନାହିଁ, ଭଞ୍ଜ ସାହିତ୍ୟକୁ ଯଦି ପାଠକ ମନରେ ରସିକତା ଥାଏ, ଯେତେ ଶୁଣିଲେ ବିରକ୍ତି ଆସେ ନାହିଁ ଭଞ୍ଜ ସଙ୍ଗୀତକୁ ଯଦି ଶ୍ରୋତା ହୃଦୟରେ ଗ୍ରାହକତ୍ୱ ଥାଏ । ସାଙ୍ଗୀତିକତାର ମନମୋହିନୀ ମଧୁର ବିଳାସ ସହିତ ପ୍ରୀତି ପ୍ରବଣତାର ନିର୍ମଳ ଅଭିବ୍ୟକ୍ତି ଭଞ୍ଜ ସାହିତ୍ୟକୁ କରିଛି ଶୋଭାଶ୍ରୀ ବିମଣ୍ଡିତ, ଅପାର୍ଥିବ ଆନନ୍ଦର ରସଘନ ମୂର୍ତ୍ତି । ତାର ଶ୍ରୀଅଙ୍ଗ ଶୋଭା ଦେଖିଲେ ଆଖି ଲାଖି ରହେ । ଗାୟକ, ରସିକ, ଭାବୁକ, ପଣ୍ଡିତ, ସମସ୍ତଙ୍କ ପାଇଁ ଅସରନ୍ତି ଆନନ୍ଦର ମଧୁଭଣ୍ଡାର ହୋଇ ଭଞ୍ଜ ସାହିତ୍ୟ କାଳଜୟୀ ପ୍ରତିଭାରେ ରଞ୍ଜିମନ୍ତ । ଅଙ୍ଗେ ଅଙ୍ଗେ ତାର ଲାବଣ୍ୟର ହୀରାଫୁଲ ପ୍ରସ୍ଫୁଟିତ, କଣ୍ଠରେ ସୁଲଳିତ ଭାଷାର ସଞ୍ଜୀବନୀ ସୁଧା ପ୍ରବାହିତ ପୁଣି ମଦାଳସୀ ଗ୍ଳାନିରେ ଦର୍ଶକର ଚିତ୍ତ ବିମୋହନ ପାଇଁ ସୁସ୍ୱରୁ ଛନ୍ଦର ବିମଳ ବିଳାସ ଉପସ୍ଥାପିତ । କାନକୁ ମଧୁର, ମନକୁ ଆହ୍ଲାଦକର ଭଞ୍ଜ ସାହିତ୍ୟର ଏକ ବିଶିଷ୍ଟ ଦିଗନ୍ତ ଭାବରେ ଭଞ୍ଜସଙ୍ଗୀତର ସ୍ଥିତି ବନ୍ଦନୀୟ ଓ ଅଭିନନ୍ଦନୀୟ । କ୍ଷୁଦ୍ର କ୍ଷୁଦ୍ର ଗୀତିକାରେ କବିଚିତ୍ତର ମନ୍ତ୍ରମୁଗ୍ଧଭାବ ଅଭିବ୍ୟକ୍ତି ଲାଭ କରିଛି ପ୍ରତ୍ୟେକ ସଙ୍ଗୀତରେ । କାବ୍ୟ ପରି କ୍ଲିଷ୍ଟତାର ଆଧିକ୍ୟ ଏଥିରେ ନାହିଁ, ଯାହା ରହିଛି ତାହା ସଙ୍ଗୀତଗୁଡ଼ିକୁ ଭାରାକ୍ରାନ୍ତ କରିନାହିଁ ବରଂ ହୃଦୟଗ୍ରାହୀ କରିଛି । ସଙ୍ଗୀତଗୁଡ଼ିକରେ ଆଦିରସର ଅଭିଷେକ ଓ ନିରାଜନା ଦୃଷ୍ଟିଗୋଚର ହୁଏ । ଏ ପ୍ରସଙ୍ଗରେ ଲାବଣ୍ୟବତୀ କାବ୍ୟରେ ତାଙ୍କ କଥା ସ୍ମରଣକୁ ଆସେ :

"ନବ ରସରେ ସାର
ଆଦ୍ୟେ ଲେଖୁ ଶୃଙ୍ଗାର ।"

ଶୃଙ୍ଗାର ନବରସ ଭିତରେ ଶ୍ରେଷ୍ଠ ବୋଲି ଆଚାର୍ଯ୍ୟମାନଙ୍କ ଦ୍ୱାରା ମଧ୍ୟ ସ୍ୱୀକୃତ ଓ ସମ୍ମାନିତ ।

"ଶୃଙ୍ଗାର ଏବ ପ୍ରଥମ ଘନପ୍ରହ୍ଲାଦ ନୋ ରସ
ତତ୍ତ୍ୱମଂ କାବ୍ୟମାଶ୍ରିତ୍ୟ ମାଧୁର୍ଯ୍ୟଂ ପ୍ରତିତିଷ୍ଠତେ ।"

ପ୍ରେମ କହିଲେ ଦୈହିକ ପ୍ରେମକୁ କେବଳ ବୁଝାଏ ନାହିଁ ତାର ସ୍ଥିତି ମଧ୍ୟ ମାନସିକ ସ୍ତରରେ ଥାଏ ବରଂ ଏକଥା କୁହାଯାଇପାରେ ଯେ ପ୍ରକୃତ ପ୍ରେମର ସ୍ଥିତି ହେଉଛି ମାନସିକତାରେ; ଯାହାର ପ୍ରଭାବ ଜୀବନକୁ ଅପାର୍ଥିବ ଆନନ୍ଦର ଖଣ୍ଡିଏ କାବ୍ୟ କରି ଗଢ଼ି ଦେଇ ପାରେ । ଭଞ୍ଜସାହିତ୍ୟରେ ଥିବା ପ୍ରେମର ସ୍ୱରୂପ ଓ ସ୍ୱଭାବ ମନରେ ଆବିଳତା ସୃଷ୍ଟି କରେ ନାହିଁ । ଯଦି ତାକୁ ଯଥାର୍ଥ ଭାବ ସହ ଅଧ୍ୟୟନ କରାଯାଏ ବରଂ ମନର ଗ୍ଳାନି, ଗ୍ଳାନିମାକୁ ଦୂର କରିବା ପାଇଁ ଦୃଢ଼ ପଦକ୍ଷେପ ନେଇଥାଏ ଓ ଅଧିକ ସୁଖପ୍ରଦ ହୋଇଥାଏ ।

ଭଞ୍ଜଙ୍କ ସଙ୍ଗୀତଗୁଡ଼ିକ ସ୍ୱକୀୟା ପ୍ରେମର ସାହିତ୍ୟିକ ରୂପାୟଣ । ସମାଜକୁ ଉଦ୍‌ଭ୍ରାନ୍ତ କରିବା ପାଇଁ ଏଥିରେ କୌଣସି ଉପାଦାନ ନାହିଁ । ଦାମ୍ପତ୍ୟ ପ୍ରେମର ମୂଲ୍ୟବୋଧ ଓ ମହତ୍ତ୍ୱ ପ୍ରକଟିତ ହେବା ପାଇଁ ଭଞ୍ଜଙ୍କ ପ୍ରତ୍ୟେକ ସଙ୍ଗୀତ ଏକ ଏକ ପୁଷ୍ପ ସୁସମଞ୍ଜସ କ୍ଷେତ୍ର ।

ପାରିବାରିକ ଜୀବନକୁ ସୁଦୃଢ଼ ତଥା ସୁସ୍ଥ କରିବା ପାଇଁ ଦାମ୍ପତ୍ୟ ଜୀବନ ଅନୁକୂଳ ଆବେଶ ସୃଷ୍ଟି କରିଥାଏ । ପତି ଓ ପତ୍ନୀ ପରସ୍ପର ପ୍ରତି ଅଧିକରୁ ଅଧିକ ଆକୃଷ୍ଟ ହୋଇ ସ୍ୱର୍ଗ ସୁଖ ଲାଭ କରିଥାନ୍ତି, ମନରେ ଥାଏ ଅନାବିଳ ଆନନ୍ଦର ମଧୁର ଛନ୍ଦ । ପ୍ରେମର ବିଜୟବାନା ଉଡ଼ିଛି ପ୍ରାୟ ପ୍ରତ୍ୟେକ ଭଞ୍ଜସଙ୍ଗୀତରେ । ପ୍ରେମହିଁ ଜୀବନ, ଜୀବନହିଁ ପ୍ରେମ । ଏ ଉକ୍ତିର ସତ୍ୟତା ଯୁଗେ ଯୁଗେ ଉପଲବ୍ଧ । ପ୍ରେମରେ ଫୁଲଫୁଟେ, ପ୍ରେମରେ ଝରଣା ଝରେ, ପ୍ରେମରେ କୋଇଲିଗାଏ, ପ୍ରେମରେ ମୟୂର ନାଚେ, ପ୍ରେମ ବିନା ସବୁ ଶୁଷ୍କ ସବୁ ନୀରସ । ଯେଉଁଠାରେ ପ୍ରେମ ନାହିଁ ବା ପ୍ରକାଶିତ ହେବାକୁ ସୁବିଧା ନାହିଁ, ସେଠାରେ ଆସୁରିକତାର ରାଜତ୍ୱ ପ୍ରତିଷ୍ଠିତ ହୋଇଥାଏ । ଭଞ୍ଜ ଥିଲେ ପ୍ରେମର ପୂଜାରୀ । ପ୍ରେମ ନିରାଜନା ନିମିତ୍ତ ତାଙ୍କର ପ୍ରତ୍ୟେକ ସୃଷ୍ଟି ଏକ ଏକ ପୂଜା ଫୁଲ । ଭିନ୍ନ ଭିନ୍ନ ରାଗିଣୀରେ ରଚିତ ସଙ୍ଗୀତ ତାଙ୍କର ଅସୀମ ଆକର୍ଷଣର ଅଧିକାରୀ । ଅଳ୍ପ କେତେକକୁ ବାଦ ଦେଲେ ଅନ୍ୟ ସଙ୍ଗୀତରେ ପ୍ରେମର ଚିତ୍ର ମାର୍ମିକ ଭାବେ ଚିତ୍ରିତ ହୋଇଛି ।

ଅପେକ୍ଷାକୃତ ସରଳ ଶବ୍ଦ ଭିତରେ ହୃଦୟର ଆବେଗ ପ୍ରକାଶିତ ହୋଇ ଭଞ୍ଜ ସଙ୍ଗୀତ ପାଠକ ଓ ଶ୍ରୋତା ମନରେ ଭରିଦିଏ ଅପୂର୍ବ ଆନନ୍ଦ । ଆଶାବରୀ ରାଗରେ ରଚିତ "ଆଜ ଦେଖିଲିରେ ନବୀନ ବୟସୀ ବାଳା" ଗୀତରେ ଯେଉଁ ଲଳିତ ଶବ୍ଦ ଚିତ୍ର ପ୍ରଦତ୍ତ ତାହା କବି ଚିତ୍ତର ସ୍ପର୍ଶ କାତରତା ସମ୍ପର୍କରେ ପ୍ରମାଣ ଦିଏ । କଳସୀ କାଖରେ ଧରି ଚାଲିଯାଉ ଥିବା ବାଳାର ଅଳସୀ ଭଙ୍ଗୀ କବିଙ୍କୁ ମନ୍ତ୍ରମୁଗ୍ଧ କରିଛି । ଏଥିରେ ଅଶ୍ଳୀଳତା ଅପେକ୍ଷା ସୌନ୍ଦର୍ଯ୍ୟ ଗ୍ରହୀତା ଅଧିକ ପ୍ରକଟିତ । କବି ମାନେ ହିଁ ସୌନ୍ଦର୍ଯ୍ୟର

ପ୍ରଦାୟୀ । ଶବ୍ଦ ଭିତରେ ସୌନ୍ଦର୍ଯ୍ୟକୁ ଗୁନ୍ଥି ନିର୍ମଳ ଆନନ୍ଦ ସୃଷ୍ଟି କରିବା ତାଙ୍କର କାର୍ଯ୍ୟ । କବିଙ୍କ ଭାଷାରେ :

"ମୁହଁ ଦେଖୁ ମୋତେ କୁରଙ୍ଗୀ ନୟନା
ତରତର ହୋଇଗଲା
କାଖେ କୁମ୍ଭ ଘେନି ଲେଉଟି ଗୃହାନ୍ତେ
ମଦନ ଶର ଦହିଲା
ସୁନ୍ଦର କନ୍ଦର୍ପ ଦର୍ପଣ ପରାୟେ
ଝଟକୁ ଥିଲା ତା ମୁଖ
ଶୁଣିଲାମାତ୍ରକେ କ୍ଷୟ ଗଲା ମୋର
ଅଙ୍ଗରୁ ଅନଙ୍ଗ ଦୁଃଖ ।"

ଏହି ଚିନ୍ତା ଭିତରେ କାମୁକତା ଅପେକ୍ଷା ରସିକତା ଓ ହୃଦୟବତ୍ତା ଅଧିକ ପ୍ରକଟିତ । ଯେନତେନ ପ୍ରକାରେଣ ଏହି ବାଳାପ୍ରାପ୍ତିକୁ ସେ ଇଚ୍ଛା କରି ନାହାନ୍ତି ବରଂ ସେଥିପାଇଁ ଶିବସେବା କରିବା କଥା ଉଲ୍ଲେଖ କରିଛନ୍ତି । ଆମ ସଂସ୍କୃତିରେ ତପସ୍ୟାଚରଣ, ବିଭୁଶରଣ, ବସ୍ତୁ ବସ୍ତୁ ପ୍ରାପ୍ତି ପାଇଁ ଅପରିହାର୍ଯ୍ୟ । କାରଣ ଆମ ଭାରତୀୟ ସଂସ୍କୃତି ହେଉଛି ତ୍ୟାଗ, ତପସ୍ୟାର ସଂସ୍କୃତି । ଏଥିରେ ଏକନିଷ୍ଠ ସେବା ବ୍ୟତୀତ କୌଣସି କାର୍ଯ୍ୟ ଯଥାର୍ଥ ଭାବେ ସମାହିତ ହୋଇ ପାରେ ନାହିଁ । କବିଙ୍କ ଭାଷାରେ :

"କୋଟି କୋଟି ଶିବ ସେବା କରିଥିବ
ଯେ ଥିବ ଗଙ୍ଗାରେ ଧାୟି
ବୋଲେ ଉପେନ୍ଦ୍ର କବିକୁଳ ଚନ୍ଦ୍ର
ତା ସଙ୍ଗ ଲଭିବ ସେହି ।"

ଅନ୍ୟ ଏକ ସଙ୍ଗୀତରେ କବିଙ୍କର ବିରହାନୁଚିନ୍ତା ପ୍ରକଟିତ । ବିରହରେ ପ୍ରୀତିର ସମୁଜ୍ଜ୍ୱଳତା ଅଧିକରୁ ଅଧିକ ଉଦ୍‌ଭାସିତ ହୋଇଥାଏ । ବିରହ ନଥିଲେ ମିଳନର ମାଧୁରିମା ବହୁଗୁଣିତ ହୁଏ ନାହିଁ । ବିରହର ହୃଦୟ ବିଦାରକ ଚିତ୍ର କବିଙ୍କୁ କରିଛି ବ୍ୟଥାରେ ବିଧୁର । ଦକ୍ଷିଣ କାମୋଦୀ ରାଗରେ ରଚିତ "ଆହା ମୋ ଲାବଣ୍ୟ ନିଧି" କବିତାରେ ସେ କହିଛନ୍ତି :

"ଯେଣିକି ଶୁଣିଲେ ଧନ ଦିଶେ ତା ଚନ୍ଦ୍ରାନନ
ଏବେ କେମନ୍ତେ କଣ୍ଟିବି ଦିନରେ ।"

ଉତ୍କଳକବିଙ୍କ ଜୀବନରେ କାନ୍ତା ବିରହ ଘଟିଥିବାରୁ ସେ ଥିଲେ ବ୍ୟଥାରେ ଜର୍ଜରିତ । ଜୀବନର ପ୍ରତିଟି ନିଃଶ୍ୱାସରେ ବିରହର ଦହନକୁ ଅନୁଭବ କରି ମର୍ମାହତ ହୋଇଥିଲେ ସେ । ତେଣୁ ତାଙ୍କ ଲେଖନୀରେ ବିରହର ଚିତ୍ର ଅଧିକ ମାର୍ମିକ ଭାବରେ ପରିସ୍ଫୁଟ ବୋଲି କେତେକ ଆଲୋଚକ ମତ ଦିଅନ୍ତି ।

କଳହଂସ କେଦାର ରାଗରେ ରଚିତ "ଦ୍ୱିତୀୟା ଯାମିନୀରେ ମୋ ପ୍ରାଣସହୀ" ସଙ୍ଗୀତରେ ଯେଉଁ ରସାଳ ପରିବେଶ ଚିତ୍ରିତ ତାହା ରସିକ ପାଠକ ମନରେ ଭାବାନ୍ତର ସୃଷ୍ଟି କରେ । ଶିବପୂଜା କରିବା ପାଇଁ କବି ଇଚ୍ଛା କରିଛନ୍ତି । କବିଙ୍କ ଭାଷାରେ :

"କହଇ ଉପେନ୍ଦ୍ର ଭଞ୍ଜ ଏ ଗୀତେ
ହର ପୂଜିବି ମୁହିଁ କାନ୍ତ ନିମନ୍ତେ
ସେବାରେ ମନାଇବି ପାର୍ବତୀ ବର
ପ୍ରିୟା ମୋ ପାଶରୁ ନ ହେବ ଅନ୍ତର ।"

ଅନ୍ୟ ଏକ ସଙ୍ଗୀତ "କେଳି ମଦନ ମଣ୍ଡି ବସିଛି ବାଳା" ଯାହା କଳହଂସ କେଦାରରେ ରଚିତ, ଏହା ମିଳନର ପରିବେଶ ବହନ କରିଛି । ବିଦେଶାଗତ ନାୟକର ଦର୍ଶନରେ ଉଲ୍ଲସିତ ଚିତ୍ତରେ ଅଳ୍ପ ଅଳ୍ପ ଲାଜରେ ଯେଉଁ ହାବଭାବ ପ୍ରକାଶ କରିଛି ନାୟିକା, ତାହା କବିଙ୍କ ଲେଖନୀରେ ପ୍ରକଟିତ ହୋଇଛି । ପ୍ରବାସୀ ନାୟକର ବିରହାନୁଚିନ୍ତା "ଆହା ମୋ ଜୀବନ ଧନୀ" କବିତାରେ ରୂପାୟିତ । ଏହା ଖମ୍ବାଜ ରାଗରେ ରଚିତ । ଦୂରରେ ରହି ନାୟିକାର ମାନସିକ ଅବସ୍ଥା ଚିତ୍ରଣ କରିଛି ନାୟକ । ମାନସ ନେତ୍ରରେ ଦର୍ଶନ କରିଛି ଭଞ୍ଜନାୟକ ବିରହିଣୀ ନାୟିକାର ଚିତ୍ର । କବିଙ୍କ ଭାଷାରେ :

"ଆଣ୍ଡା ପଲଙ୍କରେ ବସି ଭାଷା ଲେଖୁଥିବରେ
ଗଳେଥିଲା ମୋତିମାଳ ତୁଟି ଲୋଟୁଥିବରେ
ଫିଟି ଲୋଟୁଥିବ କେଶ ଝାଳେ କମ୍ପୁଥିବରେ
ଝାଳେ ଜରଜର ହୋଇ ମଥା ପୋଡିଥିବରେ ।"

ରମଣୀ ମନର ଆଶା ପ୍ରକଟିତ ହୋଇଛି ଅନ୍ୟ ଏକ ସଙ୍ଗୀତରେ ଯାହା ଆଷାଢ଼ ଶୁକ୍ଳବାଣୀରେ ରଚିତ । ପ୍ରବାସୀ ନାୟକର ଫେରିବାରେ ବିଳମ୍ବ ହେବାରୁ ନାୟିକାର ମନ ଦୁଃଖରେ ଜର୍ଜରିତ । ହରଗଉରୀଙ୍କଠାରେ ପ୍ରାର୍ଥନା ଜଣାଇ ନାୟିକା କହିଛି :

"ସତେ କି କରିବେ ହରଗଉରୀ
ପ୍ରବାସୁ ମୋ କାନ୍ତ ଆସିବେ ଫେରି ।"

"ମଲ୍ଲୀମାଳ ଶ୍ୟାମକୁ ଦେବି" ଶୀର୍ଷକ ଗୀତଟି କବି ପ୍ରତିଭାର ଅନ୍ୟତମ ଅନୁପମ ଅଭିବ୍ୟକ୍ତି । ପ୍ରୀତିପ୍ରବଣତାର ସ୍ନେହମଣ୍ଡିତ ସ୍ପର୍ଶ ଏଥିରେ ହୋଇଛି ମୂର୍ତ୍ତିମନ୍ତ ଓ ଦୀପ୍ତିବନ୍ତ । ଶ୍ୟାମକୁ ମଲ୍ଲୀମାଳ ଦେବାରେ ଅପାର ଆନନ୍ଦ ମିଳିବ ବୋଲି ଭାବନା କରିବା ଭିତରେ ଯେଉଁ ମାଧୁରିମା ପ୍ରକଟିତ ହୋଇଚି ତାହାର ପଟାନ୍ତର ନାହିଁ । ନାୟିକାର ନାମ ଏଥିରେ ଉଲ୍ଲେଖ କରାଯାଇନାହିଁ । କବିଙ୍କ ସ୍ପର୍ଶକାତରତା ଏଥିରେ ପ୍ରକଟିତ ଓ ପ୍ରତିଷ୍ଠିତ । କବିଙ୍କ ଭାଷାରେ :

"ତା ଅଙ୍ଗରୁ ସ୍ୱେଦବାରି, ଯଦି ପଡୁଥିବ ଝରି
ମୋ ଦୃଷ୍ଟି ପଡ଼ନ୍ତେ କାନି ପଣତରେ ପୋଛିବି ।"

ଅନ୍ୟ ଏକ ସଙ୍ଗୀତ "କହ କି କରିବି ବୁଦ୍ଧି ଦିଶୁନାହିଁ" ନାୟିକାର ବିରହାନୁ ଚିନ୍ତାକୁ ଭିତ୍ତିକରି ରଚିତ । କଲ୍ୟାଣ ରାଗରେ ରଚିତ ଏହି ସଙ୍ଗୀତରେ ବିପ୍ରଲମ୍ଭ ଶୃଙ୍ଗାରର ଘନୀଭୂତ ଆବେଗ ପରିଲକ୍ଷିତ । ଶ୍ରୀମତୀଙ୍କ କଣ୍ଠରେ କବି କହନ୍ତି :

"ଆସିବେ ବୋଲି ନାଗର, ମଣ୍ଡିଥିଲି କେଳିପୁର
ଜାଳି ବସିଲି ଜାଗର ନିଶି ହୋଇ ଉଜାଗର
ଶୋକ ଜଳେ ଦେଲେଟି ଉସାର ଗୋ ପ୍ରିୟସହି ।"

କୃଷ୍ଣପ୍ରୀତିରେ ସ୍ନିଗ୍ଧ ଲଳିତ ଅନ୍ୟଏକ ସଙ୍ଗୀତ ହେଉଛି "ନୂଆ ନୂଆ ଦିନା କେତେ ମୋର ଅନ୍ତରାଗ ଯେତେ" । ଏଥିରେ ଶ୍ୟାମ

...ର ଶୋକନୀୟ ଚିତ୍ର ପ୍ରକଟିତ ହୋଇ ପାଠକଙ୍କୁ ... ସଙ୍ଗୀତରେ। ବିଶେଷତଃ ନିଜନିଜର ... ଗୀତରେ ଉପସ୍ଥାପିତ ଏକଥା ବିରହୀଜନ ... କରିଥାଏ। ବିପ୍ରଲମ୍ଭ ଶୃଙ୍ଗାରର ବହୁଳ ପରିବେଷଣ ... ଶୃଙ୍ଗାରର କିଞ୍ଚିତ ପରିବେଷଣ କେତେକ ... ପରିଲକ୍ଷିତ। ପ୍ରାଣର ଉଚ୍ଛ୍ୱାସ, ଭାବର ବିମଳ ବିଳାସ, ... ଭାଷାର ସୁଷମ ସମାବେଶ, ସାଙ୍ଗୀତିକତାର ... ନେଇ ପ୍ରତ୍ୟେକଟି ସଙ୍ଗୀତ ସୃଷ୍ଟି କରନ୍ତି ପାଠକ ... ପୁଲକିତ ଅନୁଭବ। ଯେତେଥର ପାଠକଲେ ମଧ୍ୟ ପାଠକ କ୍ଳାନ୍ତ ହୁଏ ନାହିଁ, ବାରମ୍ବାର ପଢ଼ି ତହିଁରୁ ରସ ଆସ୍ୱାଦନ କରିବାର ଇଚ୍ଛା। ତାର ବଳବତୀ ହୋଇଥାଏ। ସୀମାହୀନ ଆନନ୍ଦରେ ଉଲ୍ଲସିତ ହୋଇ ସେ କବିଶେଖର ଚିନ୍ତାମଣିଙ୍କ ସହିତ ସ୍ୱରସାମ୍ୟରକ୍ଷି କହିବାକୁ କୁଣ୍ଠିତ ହୁଏ ନାହିଁ ଯେ :

"ବଞ୍ଚିଥାନ୍ତେ ଯେବେ ଆଜି ଭକ୍ତକବି
ଗହନ୍ତି ମୁଁ ତାଙ୍କ ସେବକ ପଦବୀ
ପାଦ ମୂଳେ ବସି ହୋଇ ଏକଚିତ୍ତ
ଶୁଣୁଥାନ୍ତି ତାଙ୍କ ଲଳିତ ସଙ୍ଗୀତ।"

ଓଡ଼ିଆ ବିଭାଗ, ବାଣୀବିହାର।



ଆଠଗଡ଼ଠାରେ ସ୍ୱାସ୍ଥ୍ୟ ମନ୍ତ୍ରୀ ସଯ୍ୟଦ୍ ମୁସ୍ତାଫିଜ୍ ଅହମ୍ମଦ 'ମା' ବାରତୀ କଲଟେକ୍ସ'କୁ ଉଦ୍‌ଘାଟନ କରୁଛନ୍ତି।

ବନ୍ଧୁଙ୍କ ପ୍ରୀତିର ସ୍ୱରୂପ ଅଙ୍କନ କରି ନାୟିକା ମୁଖରେ ଭଞ୍ଜକବି କହିଛନ୍ତି :

"ଶ୍ୟାମ ବନ୍ଧୁ ପ୍ରୀତି ସେହିପରି
ଭାଙ୍ଗିଗଲେ ଆଉ ଯୋଡ଼ିତ ନ ପାରିରେ ।"

ନାୟିକା ମନର ମୁଗ୍ଧ ଅନୁଭବ କବି ଲେଖନୀରେ ସ୍ପଷ୍ଟଭାବରେ ପରିସ୍ଫୁଟ ହୋଇଛି । ନାୟିକାର ସ୍ମିତ ହାସ୍ୟ ନାୟିକା ହୃଦୟରେ ଭରିହୋଇଛି ସୀମାହୀନ ଆନନ୍ଦର ଉଚ୍ଛଳ ପ୍ଲାବନ । ବ୍ୟଥା ଜର୍ଜରିତ କଣ୍ଠରେ ନାୟିକା କହିଛି :

"ଦୂର ଦେଖି ଯେବେ ହସେ, ମୋ ଅଙ୍ଗେ ସୁଧା ବରଷେ
କେଉଁ ଅବିଗୁଣ ଚିନ୍ତା ମୋର
ଧନ୍ୟ କେ ଚତୁରୀ ନାରୀ ରଖିଲା ମନ୍ତର କରି
ଭଲା ଯହ କରି ଭାଙ୍ଗି ଦେଲା ବିହିରେ ସହଚରୀ ।"

ଆଷାଢ଼ ଶୁକ୍ଳବାଣୀରେ ବିରଚିତ ପ୍ରବାସୀ,ନାୟକର ଭାବନା ଭିତ୍ତିକ ଅନ୍ୟ ଏକ ସଙ୍ଗୀତ "ବିଦେଶେ ନାୟକ ଭାଳଇ ବସି"ର ମର୍ମବାଣୀ ହେଉଛି ଅତୀତର ସ୍ମୃତିଚାରଣ । ରସିକ ନାୟକର ମାନସପଟରେ ଅଙ୍କିତ ସ୍ମୃତି ଚିତ୍ର କବିଙ୍କ ଭାଷାରେ ରୂପାୟିତ । କବିଙ୍କ ଭାଷାରେ :

"ଦିନେ ହୋଇଥିଲା ଘୋର ବରଷା
ବୋଇଲି ବାନ୍ଧବୀ ଖେଳିବା ପଶା
ପଶାଖେଳ ମୋତେ ଆସଇ ନାହିଁ
ଦାନ ପଡ଼ିଲେ ସାର ଦେବି ବାହି
ସେ ଚତୁରୀ ବାଳୀ
ସାର ବାଛିନେଲା ହଳଦୀ କାଳୀ ।"

ବିଧାତାକୁ ଧିକ୍କାର କରିଛି ନାୟକ ଦୂରରେ ରହିଛି ବୋଲି । ପ୍ରବାସୀ ଜୀବନର ଭାବାବେଗ କବିକୃତିରେ ମୂର୍ତ୍ତିମନ୍ତ ହୋଇଉଠିଛି । ଯାମିନୀରାତିର ଲଳିତ ମଧୁର ପରିବେଶ ମିଳନର ମାଧୁରିମା ନାୟକର ସ୍ମୃତି ପଥାରୂଢ଼ ହୋଇଛି । ହୃଦୟ ବିଦୀର୍ଣ୍ଣ ହୋଇଛି ଭଗ୍ନନାୟକର ।

ବିପ୍ରଲମ୍ଭ ଶୃଙ୍ଗାର ରସର ଘନୀଭୂତ ରୂପାୟଣ ଘଟିଛି କବିକୃତ ଅନ୍ୟ ଏକ ସଙ୍ଗୀତ ଯାହା କାମୋଦୀ ରାଗରେ ରଚିତ । ସଙ୍ଗୀତର ଶୀର୍ଷକ ହେଉଛି "କାନ୍ତବିନା ଦିବା ରଜନୀ ସଜନୀ କୋଟି ଯୁଗ ସମ ହେଲାଟିରେ", ଏହି ସଙ୍ଗୀତରେ ବିରହିଣୀ ନାୟିକାର ମନର ବ୍ୟଥା ପ୍ରକାଶିତ । ରୀତି ସାହିତ୍ୟରେ ପ୍ରକୃତିର ପ୍ରଭାବ ନାୟକ ନାୟିକାଙ୍କର ଶୃଙ୍ଗାରିକ ଅନ୍ତଶ୍ଚିନ୍ତା ସହ ସମ୍ପର୍କିତ ହୋଇଥିଲା । ଭଞ୍ଜକବି ଏପରି ଚିନ୍ତାଧାରାକୁ ଭାଷାରେ ରୂପାୟିତ କରି ନାୟିକା ମୁଖରେ କହିଛନ୍ତି :

ଭାରିହେଲା ଆସି ଅଙ୍ଗକୁ ବସନ
ତହିଁପରେ ଆଭରଣ ଏଭୂଷଣ
ଦେଖ ଦେଖ ସଖୀ ଏ ଝଞ୍ଜା ପବନ
କାମ ବାଣେ ପ୍ରାଣ ନେଲାଟିରେ ।"

ବଉଦିଶା ଶୈଳୀରେ ରଚିତ କବିଙ୍କ ଅନ୍ୟ ଏକ କୃତି ହେଉଛି "କନକ କଳ୍ପକୁ ମୋ ଚିତ ଧାଉ" ସଙ୍ଗୀତ । ଏହା ଆଷାଢ଼ ଶୁକ୍ଳ ବାଣୀରେ ରଚିତ । ଏଥିରେ ନାୟକର ଚିତ ନାୟିକା ପ୍ରତି ପ୍ରେରିତ । ଭଞ୍ଜକବି ପ୍ରତିଟି ପାଦରେ ବର୍ଣ୍ଣମାଳାସ୍ଥିତ ପ୍ରତ୍ୟେକ ବର୍ଣ୍ଣକୁ ଆଦ୍ୟରେ ରଖି କ୍ରମାନ୍ୱୟରେ ସଙ୍ଗୀତ ରଚନା କରିଛନ୍ତି । ନିର୍ଦ୍ଦିଷ୍ଟ ନିୟମାନୁସାରେ ରଚିତ ହୋଇଥିଲେ ହେଁ କବି ହୃଦୟର ଭାବ ଏଥିରେ ସ୍ପଷ୍ଟଭାବରେ ପ୍ରକଟିତ । ପାଠକ ହୃଦୟରେ ଭାବାନ୍ତର ଆଣିବାର ସାମର୍ଥରେ ଏହା ବିମଣ୍ଡିତ । ମାଳତୀ ଓ ମଧୁକର କହିବା ଭିତରେ ଭଞ୍ଜନାୟକ ବିପରୀତ ରତି ଚିତ୍ର ... ଚିତ୍ତରେ ଅଙ୍କନ କରିବା ପାଇଁ ପ୍ରୟାସ କରିଛି । ମାଳତୀ ପୁଷ୍ପ ନାମ ଉଲ୍ଲେଖ କରିବା ମାତ୍ରେ ତାହାହିଁ ପ୍ରତିଭାତ ହେଉଛି । କବିଙ୍କ ଭାଷାରେ :

"ଡାଳିମ୍ବ ଦନ୍ତୀତୁ ଚନ୍ଦ୍ର ଚକୋର
ଡ଼ାକେ ମୁଁ ଶ୍ୱତକ ତୁ ଜଳଧର
ଅଙ୍ଗନା ମୁଁ ହଂସ ତୁ ମାନସର
ତଥା ତୁ ମାଳତୀ ମୁଁ ମଧୁକର ।"

ଭଞ୍ଜଙ୍କର ବିରଚିତ ଅନ୍ୟ ଏକ ସଙ୍ଗୀତରେ ଦୂତୀ ପ୍ରତି ରାଧାଙ୍କ ଅଭିଯୋଗ ତଥା ଅଭିମାନ ଭିତ୍ତିକ ଉକ୍ତି ଉପସ୍ଥାପିତ । ଶ୍ୟାମନାଗର କୁଞ୍ଜକୁ ନ ଆସିଥିବାରୁ ରାଧାଙ୍କ ଅନ୍ତରର ପ୍ରତିକ୍ରିୟା ପ୍ରକାଶ ପାଇଛି । ଶ୍ୟାମ ଶିଖଣ୍ଡଚୂଳ ବୃତ୍ତରେ ରଚିତ "... ମରିବି ବିଷ" ଶୀର୍ଷକ ଉକ୍ତ ସଙ୍ଗୀତରେ ପ୍ରାଣସଖୀକୁ ହୃଦୟ ବ୍ୟଥା ଜଣାଇ ରାଧା କହନ୍ତି ଯେ ସେ ଫୁଲଶେଯ ରଚି ଅପେକ୍ଷା କରିଥିଲେ ମଧ୍ୟ କୃଷ୍ଣ ତାଙ୍କ ପୁରକୁ ଆସିଲେ ନାହିଁ । ନିଜ ପରି ଆଉ ଦୁଃଖୀ ସୃଷ୍ଟିରେ ନଥିବେ । ଏପରି କହି ନିଜକୁ ଧିକ୍କାର କରିଛନ୍ତି ରାଧା । କବିଙ୍କ ଭାଷାରେ :

"କ୍ଷିତିରେ ନାହିଁ କେହି ମୋ ପରି ଦୁଃଖୀ
ଖଳ ଫାଶି ପଡ଼ିଲି ସର୍ବ ଉପେକ୍ଷି ।"

କବିକୃତ ଅନ୍ୟ ଏକ ସଙ୍ଗୀତରେ ମାନଭଞ୍ଜନ ପ୍ରସଙ୍ଗ ଉପସ୍ଥାପିତ । ଏହା ଆଷାଢ଼ ଶୁକ୍ଳବାଣୀରେ ରଚିତ । ... ହୃଦୟର ଲଳିତ ମଧୁର ଭାବ ବିଭବ ଏଥିରେ ମୂର୍ତ୍ତିମନ୍ତ ... ରାମାୟଣର ମୁଖ୍ୟ ଚରିତ୍ରଗୁଡ଼ିକର ନାମ ବ୍ୟଞ୍ଜିତ ଶବ୍ଦକୁ ନେଇ ସେଗୁଡ଼ିକୁ ଯଥାଯଥ ସ୍ଥାନ ଦେଇଛନ୍ତି କବି ଉକ୍ତ ସଙ୍ଗୀତରେ । "ରାମ ନୟନୀ ସେ କେଳି ପ୍ରବୀଣା" ଏହି ପାଦରୁ ସଙ୍ଗୀତ ଆରମ୍ଭ । ମାନିନୀ ନାୟିକା ମୁହଁ ତଳକୁ ପୋତିବାର ଚିତ୍ର ... ଲେଖନୀରେ "ସୀତା ମାତାଙ୍କୁ ପୋତୁଛି ଲପନ" ରୂପେ ମାଧୁର୍ଯ୍ୟ ... ଚିତ୍ରିତ । ସୁଭରତ ପଦ, ମାର ଶତ୍ରୁଘନ ଶର, ତାରାପତି ... ସୁଗ୍ରୀବର ହାର, ବିଭୀଷଣର ବରଷା, ମେଘନାଦ ... ମନ୍ଦୋଦରୀ, ଲଙ୍କାରିଗମନା ଇତ୍ୟାଦି ପଦମାଳା ... କବିମାନସର ସୁକୁମାରତା ଓ ଲାଳିତ୍ୟ ପ୍ରକଟିତ ହେବା ... ସଙ୍ଗେ ପାଣ୍ଡିତ୍ୟର ମଧ୍ୟ ପରିପ୍ରକାଶ ଘଟିଛି ।

ଉପେନ୍ଦ୍ରଭଞ୍ଜ ସ୍ୱରଚିତ ସଙ୍ଗୀତମାଳାରେ କେତେବେଳେ ... କେତେବେଳେ ଅଧିକ ଭାବରେ ଆତ୍ମପ୍ରକାଶ ... ମନେହୁଏ । ପଦଯୋଜନାରେ ଯଥାଯୋଗ୍ୟତା ପ୍ରମାଣିତ ... ଯେ, ଭଞ୍ଜକବି ସ୍ୱହୃଦୟର ଭାବକୁ ନାୟକ ନାୟିକାଙ୍କ ମାଧ୍ୟମରେ ପ୍ରକାଶ କରିଛନ୍ତି । ପ୍ରୀତିପ୍ରବଣତାର ରସ ମାଧୁରୀରେ ...

... ଗ୍ରନ୍ଥ ରଚନା କରିବାଲାଗି କାହିଁକି ଇଚ୍ଛା ...ପ୍ରକଟିତ ଗ୍ରନ୍ଥ ରଚନା କରିବାଲାଗି କାହିଁକି ଇଚ୍ଛା ...ଥିଲେ କି ? ଉତ୍ତରରେ କୁହାଯାଇପାରେ ଯେ, ଉପେନ୍ଦ୍ରଙ୍କ ...ବୃତ୍ତି ମନୋବୃତ୍ତିରୁ ହିଁ ଏହି ବିଦ୍ୱତଭିତ୍ତି ପ୍ରଦାୟକ ଗ୍ରନ୍ଥରାଜୀ ...ନେଇଛି । ଉପେନ୍ଦ୍ରଙ୍କ ଏହି ପ୍ରତିଷ୍ପର୍ଦ୍ଧୀ ସମକାଳୀନ ...ଭିମାନୀ ପଣ୍ଡିତମାନଙ୍କ ପ୍ରତି ଏକାନ୍ତଭାବରେ ...ଥିଲା । ତତ୍କାଳୀନ ସଂସ୍କୃତଜ୍ଞ ବିଦ୍ୱାନ୍ ମଣ୍ଡଳୀ ଓଡ଼ିଆ ...କୁ ଏକ ଅପାଂକ୍ତେୟ ଭାଷା ରୂପେ ବିବେଚନା ...ଲେ ଓଡ଼ିଆଭାଷା ପ୍ରତି ସେମାନଙ୍କର ଅବଜ୍ଞା ଓ ଅସୂୟା ...ଏତେ ତୀବ୍ରତର ହୋଇ ଉଠିଥିଲା ଯେ, ଜାତୀୟ କବି ...ନାଥ ଦାସଙ୍କ ରଚିତ ପବିତ୍ର ଓଡ଼ିଆ ଭାଗବତ ଗ୍ରନ୍ଥକୁ 'ତେଲୀ ଭାଗବତ' ରୂପେ ଅଖ୍ୟାୟିତ କରାଯାଇଥିଲା । ଏଥିଲାଗି ଭକ୍ତକବି ଜଗନ୍ନାଥ ଦାସ ବହୁବାର ଲାଞ୍ଛିତ, ନିନ୍ଦିତ ଓ ତିରସ୍କୃତ ହୋଇଥିଲେ ବୋଲି କିମ୍ବଦନ୍ତୀ ଓ ଜନଶ୍ରୁତିରୁ ଜ୍ଞାପିତହୁଏ । ଦେବଭାଷା ସଂସ୍କୃତ ସମତୁଲ ଉଚ୍ଚାଙ୍ଗ ସାହିତ୍ୟ ଦେଶୀୟ ଓଡ଼ିଆ ଭାଷାରେ ...ହେବା ଏକାନ୍ତ ଅସମ୍ଭବ ବୋଲି ଯେଉଁ ବଦ୍ଧମୂଳ ଧାରଣା ସେମାନଙ୍କର ଥିଲା ଏବଂ ଯାହା ଫଳରେ ସେହି ଅଭିମାନୀ ବିଦ୍ୱାନ୍ ମଣ୍ଡଳୀ ଦେଶୀୟ କବି ଓ ଭାଷା–ସାହିତ୍ୟକୁ ନ୍ୟୂନ ଓ ହେୟ ସ୍ଥାନ ...ଥିଲେ, ତାହାରି ବିରୁଦ୍ଧରେ ପ୍ରଥମେ ସ୍ୱର ଉତ୍ତୋଳନ କରିଥିଲେ ...ବ୍ୟାସ ସାରଳା ଦାସ । 'ମହାଭାରତ', 'ଚଣ୍ଡୀପୁରାଣ', 'ବିଲଙ୍କାରାମାୟଣ' ଗ୍ରନ୍ଥତ୍ରୟୀ ପ୍ରଣୟନ ପୂର୍ବକ ସେ ପରୋକ୍ଷ ଭାବରେ ତଥାକଥିତ ବିଜ୍ଞ ସଂସ୍କୃତଜ୍ଞମାନଙ୍କୁ ଜଣାଇଦେଲେ ଯେ, ଓଡ଼ିଆ ଭାଷାରେ ମଧ୍ୟ ଏବଂବିଧ ଉଚ୍ଚାଙ୍ଗ ସାହିତ୍ୟ ସର୍ଜନା କରାଯାଇପାରେ ! ତେବେ ଶୂଦ୍ର ମୁନିଙ୍କର ସେହି ପ୍ରତିବାଦର ସ୍ୱର ଥିଲା ପରୋକ୍ଷ ଓ ଅପେକ୍ଷାକୃତ ନମ୍ର–ନମନୀୟ । କିନ୍ତୁ ରାଜପୁତ୍ର ଉପେନ୍ଦ୍ର ଗଭୀର ଆତ୍ମପ୍ରତ୍ୟୟ ଓ ପ୍ରଚଣ୍ଡ ପ୍ରତିଦ୍ୱନ୍ଦ୍ୱୀ ମନୋବୃତ୍ତି ନେଇ ଓଡ଼ିଆ ଭାଷାରେ ଯେଉଁ ପାଣ୍ଡିତ୍ୟ – ପିଣ୍ଡିତ ଓ ବୈଚିତ୍ର୍ୟ–ବିଳସିତ କାବ୍ୟାବଳୀ ପ୍ରଣୟନ କଲେ, ତନ୍ମଧ୍ୟରେ ସେ ଉତ୍କଳର ରାଜସିକ ଓ ଉତ୍କଳୀୟ ସ୍ୱାଭିମାନକୁ ପ୍ରକାଶ କରି ଜଣାଇଦେଲେ ଯେ, ଓଡ଼ିଆ ଭାଷା କୌଣସି ଗୁଣରେ ନ୍ୟୂନ ନୁହେଁ । ଏହି ଦେଶୀୟ ଭାଷାରେ ମଧ୍ୟ ସଂସ୍କୃତ ସାହିତ୍ୟ ସମତୁଲ ...ବନ୍ଧନା ପ୍ରଶୋଭିତ, ଅଳଙ୍କାର ବିମଣ୍ଡିତ, ବିଦଗ୍ଧ ଛନ୍ଦ–ନନ୍ଦିତ ...ଧୋ ପାଣ୍ଡିତ୍ୟ–ପ୍ରପୀଡ଼ିତ କାବ୍ୟ ସାହିତ୍ୟ ଅନାୟାସରେ ପ୍ରଣୟନ କରାଯାଇପାରିବ । ଏଣୁ କବି ତାଙ୍କର ବିଦ୍ୱତ୍‌ଭିତ୍ତି ପ୍ରଦାୟକ ଗ୍ରନ୍ଥ ...ନୈଷଧ ସୁନ୍ଦରୀ'କୁ ସଂସ୍କୃତ ସାହିତ୍ୟାକାଶର ପ୍ରଚଣ୍ଡମାର୍ତ୍ତଣ୍ଡ କବି ଶ୍ରୀହର୍ଷଙ୍କ 'ନୈଷଧୀୟ ଚରିତମ୍' ସହ ତୁଳନାତ୍ମକ ଅଧ୍ୟୟନ କରିବା ଲାଗି ଅଭିମାନୀ ପଣ୍ଡିତ ମଣ୍ଡଳୀଙ୍କୁ ନିର୍ଭୀକ ଆହ୍ୱାନ ଦେଇଥିଲେ, ଯଥା:–

"ଏ ପରାକୃତ କାବ୍ୟ ଛାନ୍ଦ ପ୍ରାକୃତସତ,
ଦୁଇ ତୁଳନାରେ ଏଥି ଅଛି ବିଶେଷତ,
ଯେନ ନୈଷଧ ପରାଏ,
ଉପେନ୍ଦ୍ର କହେ ବୁଧ ପ୍ରମତ୍ତ କହାଏ" ।

...ଏ ଜାତିର ଭାଷା–ସାହିତ୍ୟ ରାଜ୍ୟରେ ଏକଚ୍ଛତ୍ରବାଦୀ ଶାସକ ...ପେ ପରିଗଣିତ ତଥା ଏକାନ୍ତ ଗର୍ବୋନ୍ନତ ସଂସ୍କୃତଜ୍ଞମାନଙ୍କ ...ରେ ସଦାଦୁର୍ଦ୍ଦମ୍ୟ ଦମ୍ଭୋକ୍ତି ପ୍ରକାଶ ଜଣେ ପ୍ରାନ୍ତୀୟ ଭାଷାଭାଷୀ ...ପକ୍ଷରେ କମ୍ ଦୁଃସାହସିକତାର ପରିଚୟ ନୁହେଁ । ମାତୃ ସାହିତ୍ୟ ପ୍ରତି ହୋଇଥିବା ଅପମାନ ଓ ଅବଜ୍ଞାର ପ୍ରତ୍ୟକ୍ଷ ପ୍ରତିବାଦ କେବଳ ରାଜପୁତ୍ର ଉପେନ୍ଦ୍ରଙ୍କ ଭଳି ଅସାଦ... । ପ୍ରତିଭାଧରଙ୍କ ପକ୍ଷେ ହିଁ ସମ୍ଭବ, ଜାତୀୟ ଭାଷା–ସାହିତ୍ୟ ପ୍ରତି କବିଙ୍କର ତୀବ୍ରାନୁରାଗ ଓ ନିବିଡ଼ ସଂପ୍ରୀତିବୋଧର ପରିଚୟ ଏଥିରୁ ହିଁ ଅନୁମାନ କରାଯାଇପାରେ । ଏଣୁ ଗୋଟିଏ ଜାତିର ଭାଷା ଓ ସାହିତ୍ୟକୁ ଉନ୍ନତକରି ସର୍ବଭାରତୀୟ ବାଙ୍ମୟରେ ତାହାକୁ ସୁଯୋଗ୍ୟ ଆସନ ଦେବାଲାଗି ସଯତ୍ନ କବି ପ୍ରୟାସକୁ ନିନ୍ଦିତ ନା ନନ୍ଦିତ କରିବା? ସମକାଳୀନ ସାହିତ୍ୟିକ ପରିବେଶ ପୁଷ୍ଟ କବିମାନସରୁ ସଂଜାତ ବିଦଗ୍ଧ–ବିକସିତ ଓ ବିଜ୍ଞଜନ ପ୍ରଶଂସିତ ଉଚ୍ଚାଙ୍ଗ କାବ୍ୟ ସାହିତ୍ୟକୁ "ଦୁର୍ବୋଧ" ବୋଲି କହି କେବଳ ଆମେ ଆମର ଅଜ୍ଞତା ଓ ଅଧ୍ୟୟନ–କାର୍ପଣ୍ୟର ପରିଚୟ ଦେଇ ଚାଲିଛୁ । ଏଣୁ ତଥାକଥିତ "ଦୁର୍ବୋଧ" ରଚନାବଳୀ ସୃଷ୍ଟି ମୂଳରେ କବିଚିତ୍ତରେ ସଞ୍ଚିତ ଜାତୀୟ ଭାବାନୁଭୂତିକୁ ସମ୍ମାନ ପ୍ରଦାନ କରିବା ସର୍ବାଦୌ ସମୀଚୀନ ମନେହୁଏ । କବୀନ୍ଦ୍ର ଉପେନ୍ଦ୍ରଙ୍କ ଏହି ଉଗ୍ରଜାତୀୟ ଚେତନାକୁ ପ୍ରଥମ କରି ଆବିଷ୍କାର କରିଥିଲେ ଉତ୍କଳବାସୀଙ୍କ ପ୍ରାତଃ ସ୍ମରଣୀୟ ପାଶ୍ଚାତ୍ୟ ପଣ୍ଡିତ ଜନ୍ ବୀମ୍ସ । ସେ ପ୍ରଥମଥର ଭାଞ୍ଜ କବିଙ୍କୁ ଜାତୀୟ କବି ରୂପେ ଅଭିହିତ କରି ତଦୀୟ କଳା–କୀର୍ତ୍ତିର ଭୂୟସୀ ପ୍ରଶଂସା କରିଛନ୍ତି ଏହିପରି :–

"It is said by the Oriyas themselves that the language is spoken in its greatest purity in the hill state of Ghumusar, the birth place of the first National Poet, Upendra Bhanja. Looked at form the purely linguistic side, there is no doubt that Oriya has ample proof of its individuality. The Poems of Upendra Bhanja and his contemporeries are written in a language which hardly differs from the vernacular of to-day and every word of which is distinictly intelligible to the meanest labour."

preface-Comperative
Grammer of Indian languages.

ଜାତୀୟ କବି ଉପେନ୍ଦ୍ର ଏ ଜାତିର ସାହିତ୍ୟ ଓ ସଂସ୍କୃତିର ଭୂୟୋବିକାଶ ଲାଗି ଜୀବନବ୍ୟାପୀ ଯେଉଁ ନିରଳସ ଓ ନିଷ୍କାପଟ ସାଧନା ଅତୁଟ ରଖିଥିଲେ, ପ୍ରତିବଦଳରେ ସେ ପାଇଛନ୍ତି କ'ଣ ? ଜୀବିତାବସ୍ଥାରେ ଏ ଜାତି ତାଙ୍କୁ ସପରିବାର ନିର୍ବାସିତ କରି ନ୍ୟାଯ୍ୟ ରାଜ ସିଂହାସନ ପ୍ରାପ୍ତିରୁ ବଞ୍ଚିତ କରିଛି । ତାଙ୍କରି ତିରୋଧାନ ପରେ ଏ ଦେଶର ଅଗଣିତ ରସଗ୍ରାହୀ ପାଠକଙ୍କ ହୃଦ ସିଂହାସନରୁ ତାଙ୍କୁ ବିତାଡ଼ିତ କରିବାର ଅପଚେଷ୍ଟାରୁ ମଧ୍ୟ ଆମେ ବିରତ ହୋଇ ନାହୁଁ । ଆଖୁ–ଅନଳ–ହୀରାଙ୍କ ସସ୍ନେହ ଆଲିଙ୍ଗନରୁ ମୁକ୍ତ କରି ତଦୀୟ ସୃଷ୍ଟି ସମୂହକୁ ଲୋକ ଲୋଚନକୁ ଆଣିବା ଦୂରେ ଥାଉ, ଅନ୍ତତଃ ଅଧୁନା ଉପଲବ୍ଧ ଗ୍ରନ୍ଥଗୁଡ଼ିକର ଶୁଦ୍ଧ ସଂସ୍କରଣଟିଏ ପ୍ରସ୍ତୁତ କରିବାର ପ୍ରୟାସ ମଧ୍ୟ କରିନାହୁଁ । ଲାବଣ୍ୟବତୀ ଓ ବୈଦେହୀଶ ବିଳାସର ଅର୍ଦ୍ଧାଂଶ ବ୍ୟତୀତ

---

ପ୍ରାଧ୍ୟାପକ, ସ୍ନାତକୋତ୍ତର ଓଡ଼ିଆ ବିଭାଗ,
ବି: ଏ: ଭି: ମହାବିଦ୍ୟାଳୟ, କୋରାପୁଟ ।

# ଜାତୀୟ କବି ଉପେନ୍ଦ୍ର ଭଞ୍ଜ

* ଡକ୍ଟର ଉପେନ୍ଦ୍ର ନାୟକ

ସେ ଉପେନ୍ଦ୍ର ନୁହନ୍ତି କବୀନ୍ଦ୍ର। ଲେଖନୀ ତାଙ୍କର ପଦସ୍ତ୍ର-ଶ୍ରାବୀ ଓ ସୃଷ୍ଟି ତାଙ୍କର ବିପୁଳ-ବିପଣୀ। ତାଙ୍କ ନିର୍ମଳ କବିତ୍ୱର ଉର୍ମିଳ ପ୍ରବାହରେ ମଧ୍ୟଯୁଗୀୟ କାବ୍ୟ-ଜମି ଜଳସିକ୍ତ, ପାଠକୀୟ ହୃଦୟ-ଭୂମି ରସସ୍ନାତ। ବସ୍ତୁତଃ ଉପେନ୍ଦ୍ରଙ୍କ କଳା-କୀର୍ତ୍ତି ଓଡ଼ିଆ ଜାତିର ସାଂସ୍କୃତିକ ସ୍ୱାଭିମାନର ଭାସ୍ୱର ସଙ୍କେତ। ନିରବଧି କାଳର କରାଳ କବଳରୁ ତାହା ବିମୁକ୍ତ ଓ ବିଭାସିତ। ଏ ଜାତିର ସାହିତ୍ୟ ଓ ସଂସ୍କୃତିର ବିକାଶ ଲାଗି ତାଙ୍କର ଅବଦାନ ଅସୀମ ଓ ଅମାପ। ସ୍ୱଜାତୀୟ ଭାଷା-ସାହିତ୍ୟକୁ ବଳିଷ୍ଠ ଓ ବିପୁଳ କରି ଗଢ଼ି ତୋଳିବାରେ ତାଙ୍କରି ସାଧନା ଓ ସଙ୍କଳ୍ପର ସଙ୍କୋଚ ନାହିଁ। ନିରଳସ ସାରସ୍ୱତ ସାଧନା ଓ ନିରନ୍ତର ଲେଖନୀ ଚାଳନା ପୂର୍ବକ ଜାତୀୟ କବି ଉପେନ୍ଦ୍ର ଓଡ଼ିଆ ସାହିତ୍ୟର ଯେଉଁ ମହତ୍ ଶ୍ରୀ ସମ୍ପାଦନ କରିଯାଇଛନ୍ତି, ତାହାର ତୁଳନା ନାହିଁ। ଭଞ୍ଜ-ଭାରତୀ-ଭବନରେ ଜାତୀୟ ସଙ୍ଗୀତର ମଧୁ-ମୂର୍ଚ୍ଛା ଶ୍ରୁତ ହୁଏ ନାହିଁ ସତ୍ୟ, କିନ୍ତୁ ଉପେନ୍ଦ୍ର ମନ-ପ୍ରାଙ୍ଗଣରେ ସଦା ନିନାଦିତ ଜାତୀୟ ଚେତନାର ଗୁରୁଗମ୍ଭୀର ଉଦାତ୍ତ ସଙ୍ଗୀତ, କବିଙ୍କ ମନସ୍ତାତ୍ତ୍ୱିକ ପର୍ଯ୍ୟବେକ୍ଷଣ ମାଧ୍ୟମରେ ଅନୁଭବ କରିହୁଏ। ଯୁଗସ୍ରଷ୍ଟା ଉପେନ୍ଦ୍ରଙ୍କ ମନରେ ସଞ୍ଚିତ ସାହିତ୍ୟିକ ସ୍ୱାଭିମାନ ପ୍ରବୃତ୍ତିଟି ତାଙ୍କ ସୃଷ୍ଟିର ଛତ୍ରେ ଛତ୍ରେ ପ୍ରକଟିତ। ସମକାଳୀନ ସଂସ୍କୃତ ବିଦ୍ୱାନ୍ ମଣ୍ଡଳୀଙ୍କ ନିଷ୍ଫଳ ଅଭିମାନ ସଂଜାତ ଅପମାନ ଜାଲରୁ ଜାତୀୟ ଭାଷା-ଜନନୀଙ୍କୁ ବିମୁକ୍ତ କରିବାର ନିଷ୍ପାପର ସଙ୍କଳ୍ପବୋଧଟି ତାଙ୍କ ସାରସ୍ୱତ ସୃଷ୍ଟିରେ ମର୍ମରିତ। ଭଞ୍ଜ ସାହିତ୍ୟର ପ୍ରତିପକ୍ଷ ସମୀକ୍ଷକମାନଙ୍କ 'ଦୋଷଦର୍ଶନ' ପର୍ଯ୍ୟାୟଭୁକ୍ତ "ଦୁର୍ବୋଧ" ଶବ୍ଦଟିର ପ୍ରାୟୋଗିକ ତର୍ଜମାରୁ ଭଞ୍ଜୀୟ ଚିତ୍ତବୃତ୍ତିରେ ସଞ୍ଚିତ ଜାତୀୟ ଭାଷା ପ୍ରତି ପ୍ରୀତିବୋଧଟି ସ୍ୱତଃ ବାରିହୋଇ ପଡ଼େ। କୁହାଯାଏ ଯେ, ଭଞ୍ଜ ସାହିତ୍ୟ ଦୁର୍ବୋଧ। କାରଣ ଏହା କ୍ଲିଷ୍ଟ କଳ୍ପନା-ଶବଳିତ, ପାଣ୍ଡିତ୍ୟ-ପ୍ରପୀଡ଼ିତ ଏବଂ କଠିନ ଶାବ୍ଦିକ ଐନ୍ଦ୍ରଜାଲିକତାରେ ଆଚ୍ଛାଦିତ।

ପ୍ରଥମତଃ ଏଠି ପ୍ରଶ୍ନ ଉଠେ ଯେ, ତଥାକଥିତ "ଦୁର୍ବୋଧ" ଶବ୍ଦଟି କେଉଁ ପାଠକ ବର୍ଗଙ୍କ ପାଇଁ ଉଦ୍ଦିଷ୍ଟ? ଉତ୍ତରରେ କୁହାଯାଇ ପାରେ ଯେ, ଏହା କେବଳ ସେହି କତିପୟ ଅଧ୍ୟୟନ କାର୍ପଣ୍ୟ ପଲ୍ଲବଗ୍ରାହୀ ପାଠକବର୍ଗଙ୍କ ଲାଗି ଅଭିପ୍ରେତ। ଯେଉଁମାନେ ଶବ୍ଦଜ୍ଞାନ ଆହରଣ ପାଇଁ ଏକାନ୍ତ ପରାଙ୍ମୁଖ, ଅଧ୍ୟୟନ-ବିମୁଖ, ସୁଲଭ ମାର୍ଗରେ ଆପଣାକୁ ବିଶିଷ୍ଟ ସାହିତ୍ୟିକ ରୂପେ ପ୍ରତିଷ୍ଠିତ କରାଇବା ଲାଗି ଅହରହ ବ୍ୟାକୁଳ, ସେହି ସହଜ ଜ୍ଞାନ ଲିପ୍ସୁ ପାଠକବର୍ଗଙ୍କ ପାଇଁ ଭଞ୍ଜ ସାହିତ୍ୟ କେବଳ "ଦୁର୍ବୋଧ" ନୁହେଁ 'ଅବୋଧ' ହୋଇ ପଡ଼ିବ। ତେବେ କବୀନ୍ଦ୍ର ଉପେନ୍ଦ୍ର ଯେଉଁ ସମୟରେ କାବ୍ୟ ରଚନା କରିଥିଲେ, ସେତେବେଳେ ପାଠକ... ପ୍ରାଥମିକ ଶିକ୍ଷା ଥିଲା, "ଅମର ଯୁମର ନିଠେଇ ଘୋଷ, ଅର୍ଦ୍ଧ ... କଥା ଗଳରେ ଖୋସ," ଯେତେବେଳେ "ଅମରକୋଷ" ଓ "ମୁଗ୍ଧ... ବ୍ୟାକରଣ" ଚଟଶାଳୀ ପାଠ୍ୟକ୍ରମ ଅନ୍ତର୍ଭୁକ୍ତ ଥିଲା, ସେତେବେଳେ ଉଚ୍ଚତର ଶିକ୍ଷାର ମାନ କେତେ ଉନ୍ନତତର ଥିବ, ତାହା ସ୍ୱତଃ ଅନୁମାନ ସାପେକ୍ଷ। ଏଣୁ ଉପେନ୍ଦ୍ରଭଞ୍ଜ ତଥା କଥିତ "ଦୁର୍ବୋଧ" ରୀତି-ରଞ୍ଜିତ କାବ୍ୟ ପ୍ରଣୟନ କଲାବେଳେ ଏ ଦେଶରେ ... ଭବିଷ୍ୟତ ପାଠକ ଗୋଷ୍ଠୀ ଏଭଳି ଜ୍ଞାନ-ଦୈନ୍ୟ ଓ ଜ୍ଞାନାହରଣ-କାର୍ପଣ୍ୟ ହୋଇପଡ଼ିବେ ବୋଲି କଦାପି ଚିନ୍ତା କରି ନଥିଲେ।

ଦ୍ୱିତୀୟତଃ ଓଡ଼ିଆ ଶବ୍ଦକୋଷକୁ ସୁସମୃଦ୍ଧ କରିବା ଥିଲା ଉପେନ୍ଦ୍ରଙ୍କ ମାନସିକ-ସଙ୍କଳ୍ପ। "ଶବ୍ଦ"ର ଅଭିବୃଦ୍ଧି ନହେଲେ, ଭାଷାର ବିକାଶ ଓ ସାହିତ୍ୟର ବିପୁଳ ପ୍ରକାଶ ଆଦୌ ସମ୍ଭବପର ନୁହେଁ। ଏଣୁ ଓଡ଼ିଆ ଭାଷା ଓ ସାହିତ୍ୟକୁ ସୁବିଶାଳ ଓ ସୁ... କରିବା ନିମିତ୍ତ ଭଞ୍ଜ କବି "ଶବଦ ସାଗରକୁ ପାର" କରିଥିଲେ, ଯାହାର ଅମୃତମୟ ଫଳ ସ୍ୱରୂପ ସେ ଏ ଜାତିକୁ "ଗୀତାଭିଧାନ" ନାମକ ଏକ ଅମୂଲ୍ୟ ଶବ୍ଦକୋଷ ପ୍ରଦାନ କରିଯାଇଛନ୍ତି। ପ୍ରାଚୀନ ଶବ୍ଦାବଳୀ ସହିତ ଅସଂଖ୍ୟ ନବୀନ ଶବ୍ଦରାଜିର ମଣି-କାଞ୍ଚନ ସଂଯୋଗରେ ସେ ସୃଷ୍ଟି କରିଛନ୍ତି। ... ଅକ୍ଷର-କୀର୍ତ୍ତି। ଏହି ଅମ୍ଳାନ କାବ୍ୟ-କୋଷର ମୂଲ୍ୟାବଧାରଣ ଲାଗି ଅସୀମ ଶବ୍ଦଜ୍ଞାନର ଯେ ଆବଶ୍ୟକତା ରହିଛି, ଏଥିରେ ଦ୍ୱିରୁକ୍ତି ନାହିଁ। ତେବେ ସ୍ୱକୀୟ ସୃଷ୍ଟିକୁ ... ଐନ୍ଦ୍ରଜାଲିକତାରେ ଆଚ୍ଛାଦିତ କରିବା ମୂଳରେ ଓଡ଼ିଆ ଶବ୍ଦଭଣ୍ଡାରକୁ ସମୃଦ୍ଧ କରିବାର ସଙ୍କଳ୍ପବୋଧଟି ହିଁ ମୂଳତଃ ଦାୟୀ ବୋଲି ସ୍ୱୀକାର କରିବାକୁ ପଡ଼ିବ। ଅତଏବ କବିମନରେ ପୋଷିତ ... ଜାତୀୟ ଭାବବୋଧଟିକୁ ଉପଲବ୍ଧି କରିପାରୁ ନଥିବା ଅଜ୍ଞ ... ଜ୍ଞାନ-ତୁଷ୍ଟ ପାଠକ ପକ୍ଷରେ ଭଞ୍ଜ ସାହିତ୍ୟ ଦୁର୍ବୋଧ ବୋଧ ହୋଇ ପଡ଼ିବା ଆଦୌ ଆଶ୍ଚର୍ଯ୍ୟକର କଥା ନୁହେଁ।

ତୃତୀୟତଃ ଯେଉଁ କବିଙ୍କ ଅମୃତବର୍ଷୀ ଲେଖନୀ ... "ଲାବଣ୍ୟବତୀ", "ରସଲେଖା", "ରସିକ ହାରାବଳୀ" ... "ଚଉପଦୀଚନ୍ଦ୍ର" "ଖୋଳପୋଇ" ପ୍ରଭୃତି ସରଳ ଓ ... ରୀତି-ରଞ୍ଜିତ କାବ୍ୟ କବିତାମାନ ଜନ୍ମ ନେଇଛି, ସେହି ... 'ବୈଦେହୀଶ ବିଳାସ', 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ', 'ଲାବଣ୍ୟବତୀ' ... 'ଅବନାରସ ତରଙ୍ଗ', 'କଳାକଉତୁକ' ପ୍ରଭୃତି ଭଳି କ୍ଲିଷ୍ଟ କବି...

# ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀ

* ଶ୍ରୀମତୀ ଜୟନ୍ତୀ ମିଶ୍ର

ମଧ୍ୟଯୁଗୀୟ କାବ୍ୟ କୋଣାର୍କର ଅମରଶିଳ୍ପୀ ଭାବେ କବିସମ୍ରାଟ ଉପେନ୍ଦ୍ରଭଞ୍ଜ ସୁପରିଚିତ। ସେ କବିପ୍ରସୂ ଗଞ୍ଜାମ ଜିଲ୍ଲାର କୁଳାଡ଼ଗଡ଼ରେ ଜନ୍ମଗ୍ରହଣ କରି ବହୁ କାବ୍ୟ, କବିତା, ଚଉପଦୀ ଓ ଚଉତିଶାଦି ରଚନା କରିଥିଲେ। ସ୍ୱରଚିତ ରଚନାବଳୀର ଏକ ତାଲିକା ଚିତ୍ରକାବ୍ୟ ବନ୍ଧୋଦୟ'ରେ ପ୍ରଦାନ କରି ସେ ଉଲ୍ଲେଖ କରିଛନ୍ତି :–

"ଅଶେଷ ଚଉତିଶା ଚଉପଦୀ,
ତାହା କେତେ ଯେ କହିବି ସମ୍ପାଦି।
ଗାହା ଦୋହା ଷୋଡ଼ଶେନ୍ଦୁ ଛ ପୋଇ,
ଇତ୍ୟାଦି କବିତ୍ୱ ଗଣନା ନାହିଁ।
ରସ କୃଷ୍ଣ ବିଶୟ ଯେତେ ଗ୍ରନ୍ଥ,
ଚିଉୋଇ ତହୁଁ କିଛି ଲେଖେ ଏଥ।
ପ୍ରଥମେ ଛଇ କଳ୍ପନା ମାଧୁରୀ,
ସୁଖ ଚିତ୍ରଲେଖା ହେମ ମଞ୍ଜରୀ।
ରସଲେଖା କାମକଳା ଚରିତ,
ମନୋରମା ପ୍ରେମଲତା ସୁଗୀତ।
ଭାବବତୀ ମୁକ୍ତାବତୀ ପ୍ରମାଣ,
ବ୍ରଜଲୀଳା ଯେ ଛାନ୍ଦଭୂଷଣ।
ଷଡ଼ଋତୁ କଳାକଉତୁକର,
ଛ ନିୟମ ସାଧ୍ୟ ସୁଭଦ୍ରାସାର।
ବୈଦେହୀଶ ବିଳାସ ସେହି ବାଦ୍ୟ,
ପ୍ରସିଦ୍ଧ ଅବନା ଦ୍ୱାଦଶ ଛାନ୍ଦ।
ରାମଲୀଳାମୃତ ଶେଷ ଚରିତ,
ପ୍ରେମ ସୁଧାନିଧି ଯମକେ ସ୍ଥିତ।
ରସିକ ହାରାବଳୀ ନାମେ ଗୀତ,
କୁଞ୍ଜବିହାରାଦି ଶ୍ୟାମ ଚରିତ।
ପଲକାର ରୀତି ରସ ପଞ୍ଚକ,
ଲାବଣ୍ୟବତୀ ରସିକ ତୋଷକ।
ପୁରୁଷୋତ୍ତମ ମାହାତ୍ମ୍ୟ ରଚନ,
ନାନା ବୋଧ ଶବ୍ଦେ ଗୀତାଭିଧାନ।
ଛାନ୍ଦ କୋଟି ତାରା ଚନ୍ଦ୍ରମା ପରି,
ଯା ନାମ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ।
ତ୍ରୈଲୋକ୍ୟ ମୋହିନୀ ଆଦି ଯେ ଗୀତ,
ନିମିତ ଛାନ୍ଦ ପୋଥି ପାଞ୍ଚ ସାତ।
ଯେ ଅର୍ଥ ପାର୍ଥିବ ମାର୍ଗେଣ ପୁଣ,
ଯୋଗଛି ଯେଣୁ କରି ବିତରଣ।
ବାଲ୍ମୀକେ ମହାନାଟକ ପ୍ରକାରେ,
ଦତ୍ତ ହେଲା ପ୍ରାପ୍ୟ ହନୁମନ୍ତରେ।
ସେ ଏଣୁ ଲେଖା ନୋହିଲା ଲେଖାରେ,
ନଗ୍ରାହ୍ୟ ଦାନ ଧନ ଭୁ ଲେଖାରେ"।

(୧ମ ଛାନ୍ଦ ୧୦ରୁ ୨୪ ପଦ)

ଉପଯୁକ୍ତ ଉକ୍ତିରେ କବି ସ୍ୱରଚନାବଳୀର ଶ୍ରେଣୀ ବିଭାଗ ସହିତ କେତେକ କାବ୍ୟର ନାମ ମଧ୍ୟ ପ୍ରଦାନ କରିଛନ୍ତି। ଏହି କାବ୍ୟଗୁଡ଼ିକ ମଧ୍ୟରେ ଛପୋଇ, ଚିତ୍ରଲେଖା, ହେମମଞ୍ଜରୀ, ରସଲେଖା, କାମକଳା, ମନୋରମା, ପ୍ରେମଲତା, ଭାବବତୀ, ମୁକ୍ତାବତୀ, ଛାନ୍ଦଭୂଷଣ, କଳାକଉତୁକ, ସୁଭଦ୍ରାସାର, (ସୁଭଦ୍ରା ପରିଣୟ), ବୈଦେହୀଶ ବିଳାଶ, ଅବନାରସ ତରଙ୍ଗ, ରାମଲୀଳା ମୃତ, ପ୍ରେମ ସୁଧାନିଧି, ରସିକ ହାରାବଳୀ, କୁଞ୍ଜବିହାର, ରସ ପଞ୍ଚକ, ଲାବଣ୍ୟବତୀ, ପୁରୁଷୋତ୍ତମ ମାହାତ୍ମ୍ୟ, ଗୀତାଭିଧାନ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ତ୍ରୈଲୋକ ମୋହିନୀ ଆଦି ଚବିଶିଗୋଟି ଗ୍ରନ୍ଥର ନାମ ଉଲ୍ଲେଖ ଯୋଗ୍ୟ।

ଚିତ୍ରକାବ୍ୟ ସ୍ଥିତ ଉକ୍ତିରେ ଥିବା ବ୍ରଜଲୀଳା ଓ ଷଡ଼ଋତୁ ସହିତ ଚିତ୍ରକାବ୍ୟକୁ ମିଶାଇ କେତେକ ଆଲୋଚକ କବିଙ୍କର ଗ୍ରନ୍ଥ ସଂଖ୍ୟା ୨୭ ବୋଲି କହନ୍ତି। ଏତଦ୍ ବ୍ୟତୀତ "ଅର୍ଥପାର୍ଥିବମାର୍ଗେଣ" କବି ତ୍ରୈଲୋକ ମୋହିନୀ ଆଦି କେତେକ ଛାନ୍ଦ ପୋଥି ରଚନାକରି ବାଲ୍ମୀକି କୃତ ମହାନାଟକ ହନୁମାନଙ୍କୁ ଦତ୍ତହେଲାପରି ଅନ୍ୟମାନଙ୍କୁ ଦାନ କରିଥିବା କଥା ସୂଚନା ଦେଇଛନ୍ତି।

କବି ନିଜେ ସ୍ୱରଚିତ ଚିତ୍ରକାବ୍ୟରେ ପ୍ରଦତ୍ତ ତାଲିକାକୁ ମନେପକାଇ ଲେଖୁଥିବାରୁ (ଚିଉୋଇ ତହୁଁ କିଛି ଲେଖେ ଏଥ) ଆଉ କିଛି ଗ୍ରନ୍ଥର ନାମକୁ ଛାଡ଼ି ଦେଇଥିବା ସ୍ପଷ୍ଟ ଅନୁମିତ ହୁଏ।

ଚିତ୍ର କାବ୍ୟବନ୍ଧୋଦୟର ରଚନାପରେ କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ରଚନାବଳୀର ଏକ ସୂଚନାତ୍ମକ ତାଲିକା ଜେ. ଲଙ୍ଗସାହେବ (୧୮୫୦) ମସିହାରେ ପ୍ରଦାନ କରିଥିଲେ। ଏହି ତାଲିକାରେ 'ରସମଞ୍ଜରୀ' ନାମଟି ପ୍ରଥମଥର ପାଇଁ ପରିଦୃଷ୍ଟ ହେଲା। ଏହାଙ୍କ ପରେ ରଙ୍ଗଲାଲ (୧୮୬୪) ସୁବର୍ଣ୍ଣରେଖା, ଶୋଭାବତୀ, ଷଡ଼ପଟି, ଦୁପଟି, ଧ୍ୱନି ମଞ୍ଜରୀ, ଶବ୍ଦମାଳା ଓ କାମକୌତୁକ, ବୀମ୍ସସାହେବ (୧୮୭୨) ନଅପୋଇ, ହଣ୍ଟରସାହେବ (୧୮୭୨) ଇଚ୍ଛାବତୀ, କଳାକଣ୍ଠକ, କଳାବତୀ, ଚଉପଦୀ ଚନ୍ଦ୍ର, ଚଉପଦୀ ଭୂଷଣ, ଚନ୍ଦ୍ରକଳା, ଚନ୍ଦ୍ରଲେଖା, ବଇଦିଶା, ଯମକରାଜ ଚଉତିଶା, ଶବ୍ଦରେଖା, ସଙ୍ଗୀତ କୌମୁଦୀ ମନମୋହନ

# କୋଟିଏ ପ୍ରଣାମ

* ଚୈତନ୍ୟ ପ୍ରସାଦ ସେଠୀ

ହେ କବି ସମ୍ରାଟ !
ତୁମ କାବ୍ୟ ନାୟିକାର
ମୋଦ ମୋଦ ଭଷାସିତ ଋଣ
ପ୍ରତିଟି ହୃଦୟେ ଦିଏ
ଆଜି ଧୁରେ
ମର୍ମରିତ ଜୀବନର ଲାସ୍ୟ
ରାଜାଠାରୁ ପ୍ରଜା ଯାଏଁ
ମୂର୍ଖଠାରୁ ପଣ୍ଡିତ ଓ
ଏ ଓଡ଼ିଆ ଚାଷିଙ୍କୁ
ହିମାଳୟ ଯାଏଁ
କାଳ ଜୟୀ
ବନ୍ଦନାର ନ୍ୟାୟେ ।

ତମେତ ସମ୍ରାଟ
ଏ ବିଦଗ୍ଧ ପାଠକର ହୃଦୟର ରାଜ୍ୟେ
ତୁମ ଶବ୍ଦ ଅସ୍ତ୍ରେ
ସଂହାରିଛ କାବ୍ୟେ ତୁମ
ବହୁ କବିଙ୍କର ଯଶ
ଲୟ ରଖୁ ଜୟଦେବେ
ଭାଷା ଭାବେ ସର୍ବେ କରି ବଶ
ପୁଲକିତ ରସ ଦେଇଛ ପୀୟୂଷ ସମ
ରସଗ୍ରାହୀ ହୃଦୟେ ଅଶେଷ
ତବ ପ୍ରୀତି ଗୀତି ସତେ
ଏବେ ମଧ୍ୟ ରଚିଯାଏ ଅନିଶ୍ଚିତ ଏ ବିଶ୍ୱରେ
ଭାବମୟ ମାନବୀୟ ରାସ ॥

ଆଜି ମଧ୍ୟ ସ୍ୱପ୍ନ ଦେଖେ
ଅସଫଳ ଏ ସଭ୍ୟତା ତଳେ
ଅସହାୟ ମଣିଷଟି ତମ ସୃଷ୍ଟ ଭଞ୍ଜୀୟ ନାୟିକା
ଲଳିତ ମଧୁର ଛନ୍ଦେ
ତା ଜୀବନେ ଆସି ଅବା
ରଚି ଦେବ ପ୍ରୀତି ନୀହାରିକା
ରସେ ରସି ଜୀବନର ବିମୁଗ୍ଧ ରସିକା ॥

କୋଟିଏ ପ୍ରଣାମ–
ଭଞ୍ଜ କବି ତବ ପାଦ ତଳେ
ତବ କୀର୍ତ୍ତି ରହୁଥାଉ କାଳେକାଳେ
ମହୀ ତଳେ, କଳିଙ୍ଗ ଉତ୍କଳେ
ରମଣୀୟ କାବ୍ୟ କଳା ତଳେ ॥

---

ଦର୍ଶନ ବିଭାଗ ମୁଖ୍ୟ,
ଖଲ୍ଲିକୋଟ ସାନ୍ଧ୍ୟ ମହାବିଦ୍ୟାଳୟ,
ବ୍ରହ୍ମପୁର, ଗଞ୍ଜାମ ।

# ଓଡ଼ିଆ ସାହିତ୍ୟର ଗୌରବମଣି
# କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ

* ରାଧାରାମ ମେହେର

ସମୟ ଥିଲା, ଯେଉଁ ସମୟରେ କି ଭାରତରେ କେବଳ ସଂସ୍କୃତ ଭାଷାରେ ଗ୍ରନ୍ଥ ରଚନା କରାଯାଉଥିଲା । ସମୟର ପରିବର୍ତ୍ତନ କ୍ରମେ ସଂସ୍କୃତ ଅପଭ୍ରଂଶ ଭାଷାରେ ଗ୍ରନ୍ଥ ଲେଖିବା ଆରମ୍ଭ ହେଲା । ଓଡ଼ିଆ କବିମାନେ ସଂସ୍କୃତ ଗ୍ରନ୍ଥଗୁଡ଼ିକୁ ଓଡ଼ିଆରେ ଲେଖିଲେ । ଅନୂଦିତ ଗ୍ରନ୍ଥମାନଙ୍କ ମଧ୍ୟରେ କବି ଜଗନ୍ନାଥ ଦାସଙ୍କ ଶ୍ରୀମଦ୍ଭାଗବତ ପ୍ରଥମ । କ୍ରମେ ରାମାୟଣ ମହାଭାରତ ଆଦି ଅନ୍ୟାନ୍ୟ ସଂସ୍କୃତ ଗ୍ରନ୍ଥମାନ ଅନୂଦିତ ହେଲା ଓ ତହିଁ ସଙ୍ଗେ ସଙ୍ଗେ ଓଡ଼ିଆ ଭାଷାରେ ଅନ୍ୟାନ୍ୟ ଗ୍ରନ୍ଥମାନ ଲିଖିତ ହେଲା । ସେ ସମସ୍ତ ପୁରାଣ ବା ଧର୍ମଗ୍ରନ୍ଥ ନାମରେ ଅଭିହିତ ।

ଏହାପରେ ଓଡ଼ିଆ କାବ୍ୟଯୁଗର ଅରୁଣୋଦୟ । ଏହାକୁ ସାହିତ୍ୟର ମଧ୍ୟଯୁଗ ନାମରେ ଅଭିହିତ କରାଯାଇଅଛି । ଉପେନ୍ଦ୍ରଭଞ୍ଜ ଏ ଯୁଗର ଶ୍ରେଷ୍ଠ କବି । ଏହାଙ୍କ ପିତା ନୀଳକଣ୍ଠ ଭଞ୍ଜ ଏକ ଉଦାର ପ୍ରକୃତିର ଲୋକ ଥିଲେ ଓ ଉପେନ୍ଦ୍ରଙ୍କ କିଶୋର ବୟସରେ ତାଙ୍କର ଦେହାବସାନ ଘଟିଥିଲା । ତେଣୁ ତାଙ୍କର ଶିକ୍ଷା ଦୀକ୍ଷାଦି ସମସ୍ତଭାର ପିତାମହ ଧନଞ୍ଜୟ ଭଞ୍ଜଙ୍କ ଉପରେ ନ୍ୟସ୍ତ ଥିଲା ।

ଉପେନ୍ଦ୍ର ଦେଖିଲେ ଯେ, କେବଳ ଧର୍ମଗ୍ରନ୍ଥ ରଚନାରେ ଓଡ଼ିଆ ସାହିତ୍ୟ ସୀମିତ ଓ ସଙ୍କୁଚିତ ହୋଇ ରହିଛି । ତେଣୁ ସେ ଅନେକ କବିତ୍ୱମୟୀ କାବ୍ୟ ସଙ୍ଗୀତାଦି ବିଭିନ୍ନ ରସ ଓ ଛନ୍ଦ, ବନ୍ଧ, ଶ୍ଳେଷ, ଅନୁପ୍ରାସ ଯମକାଦି ଅଳଙ୍କାର ପ୍ରୟୋଗରେ ଉତ୍କଳ ଭାରତୀକୁ ବିଭୂଷିତ କରିବା ପାଇଁ ସଚେଷ୍ଟ ହେଲେ । ନିଜେ ରାଜପୁତ୍ର ହୋଇ ରାଜାଡ଼ମ୍ବରୀୟ ସମସ୍ତ ଭୋଗବିଳାସରୁ ନିର୍ଲିପ୍ତ ରହି କେବଳ ଶାସ୍ତ୍ରଚର୍ଚ୍ଚା ଓ କାବ୍ୟ ରଚନାରେ ହିଁ ନିଜକୁ ନିୟୋଜିତ କଲେ ଏବଂ ଓଡ଼ିଆରେ କିଭଳି ପାଣ୍ଡିତ୍ୟପୂର୍ଣ୍ଣ ରଚନାମାନ ଲେଖିହୋଇ ପାରେ ତହିଁର ସୁସ୍ପଷ୍ଟ ପ୍ରମାଣ ପ୍ରତିପାଦନ କଲେ । ତାଙ୍କ ଜୀବଦ୍ଦଶାର ମାତ୍ର ୩୬ରୁ ୪୦ ବର୍ଷ ମଧ୍ୟରେ ସେ ଦିଗରେ ସେ ଯେଉଁ ଅପୂର୍ବ ଓ ଅସାଧାରଣ କୃତିତ୍ୱ ଅର୍ଜନ କରିଅଛନ୍ତି ତାହା ସଂସ୍କୃତ ବ୍ୟତୀତ ଭାରତୀୟ ଅନ୍ୟ କୌଣସି ସାହିତ୍ୟରେ ଦେଖାଯାଏ ନାହିଁ ।

କହିବା ବାହୁଲ୍ୟ ଯେ, ସେ ସମୟରେ କବିମାନଙ୍କ ରଚନାମାନ ତାଳପତ୍ରରେ ଲିଖିତ ହେଉଥିଲା ଓ ତାହା ପ୍ରତ୍ୟେକ ଗ୍ରାମର ଭାଗବତଟୁଙ୍ଗିମାନଙ୍କରେ ଲୋକଙ୍କ ଦ୍ୱାରା ଆଲୋଚିତ ହୋଇ ପ୍ରକାଶିତ ଲେଖାମାନ ପାଲା, ସୁଆଙ୍ଗ, ଦାସକାଠିଆ ମାଧ୍ୟମରେ ପ୍ରଚାରିତ ହେଉଥିଲା । ଉପେନ୍ଦ୍ରଙ୍କ ଲେଖାମାନ ସାଧାରଣ ଲୋକଙ୍କ ବୋଧଗମ୍ୟ ହେବା ସକାଶେ ସେଭଳି ସହଜସାଧ ନଥିଲା । ବିଶେଷତଃ ତାହା ପଣ୍ଡିତ ବ୍ୟକ୍ତିଙ୍କ ପାଇଁ ଲିଖିତ । ତଥାପି ତହିଁର ଭାଷା ସୌନ୍ଦର୍ଯ୍ୟ ଓ ଲାଳିତ୍ୟରେ ଲୋକେ ଏଭଳି ମୁଗ୍ଧ ହୋଇ ଗଲେ ଯେ, ତାହା ଉଚ୍ଚ ପ୍ରଶଂସା ଲାଭ କରିବା ପାଇଁ ଅଧିକ ସମୟ ଲାଗି ନ ଥିଲା । ଅଳ୍ପଦିନ ମଧ୍ୟରେ ସବୁପ୍ରକାର ଲୋକଙ୍କ ମୁଖରେ ତାଙ୍କ ରଚନା ଶୁଣିବାକୁ ମିଳିଲା । ତାଙ୍କ ନାମ ଚାରିଆଡ଼େ ବିଖ୍ୟାତ ହୋଇଗଲା ।

ଉଲ୍ଲେଖନୀୟ ଯେ, ତାଙ୍କ ସାହିତ୍ୟର ଭାଷା ଶୈଳୀ, ଛନ୍ଦ, ବନ୍ଧ, ଶବ୍ଦଯୋଜନା ତଥା ତହିଁରେ ପ୍ରଯୁକ୍ତ ବିଭିନ୍ନ ଅଳଙ୍କାର ଆଦି ପ୍ରତ୍ୟେକ ବସ୍ତୁ ତାଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ ଦେଖା ନ ଥିଲା । ଅବଶ୍ୟ ଛାନ୍ଦ ଗ୍ରନ୍ଥ ଲେଖିବାର ଆରମ୍ଭ କରିଥିଲେ ତାଙ୍କର ପିତାମହ ଘୁମୁସର ରାଜା ଧନଞ୍ଜୟ ଭଞ୍ଜ । ତନ୍ମଧ୍ୟରୁ ରସବତୀ ଓ ସୁଲକ୍ଷଣା ଉଲ୍ଲେଖଯୋଗ୍ୟ । ଧନଞ୍ଜୟଙ୍କ ଜୀବଦ୍ଦଶାରେ ଉପେନ୍ଦ୍ର ତାଙ୍କର ସବୁଠୁଁ ବଡ଼ ଓ ପ୍ରଧାନକୃତି 'ବ' ପୂର୍ବାନୁପ୍ରାସ "ବୈଦେହୀଶ ବିଳାସ" ମଧ୍ୟ ଲେଖିସାରିଥିଲେ । ଯାହାକି ଓଡ଼ିଆ ସାହିତ୍ୟରେ ସର୍ବଶ୍ରେଷ୍ଠ ମହାକାବ୍ୟ ରୂପେ ଏ ଯାଏ ସମ୍ମାନିତ ହୋଇ ଆସୁଅଛି । ଏଥିରୁ ନିଃସନ୍ଦେହ ଯେ, ଧନଞ୍ଜୟଙ୍କ ଛାନ୍ଦଗ୍ରନ୍ଥ ଦୁଇଟି ଉପେନ୍ଦ୍ରଙ୍କ କାବ୍ୟରଚନା ଦିଗରେ ଆଦୌ ଖୋରାକ ଯୋଗାଇ ପାରିନାହିଁ । ସୁତରାଂ ତାଙ୍କର ଏଭଳି ଏକ ବିଲକ୍ଷଣ ବହୁମୁଖୀ ପ୍ରତିଭା ଯୁଗପତ୍ ବିକାଶ ଲାଭ କରିଥିବାର ଅତୀବ ଆଶ୍ଚର୍ଯ୍ୟର ବିଷୟ । ସମ୍ପ୍ରତି କବିଙ୍କ ଜୀବନୀ ଓ ତାଙ୍କର କାବ୍ୟରଚନା ସମ୍ପର୍କରେ ସାମାନ୍ୟ ଆଲୋକପାତ କରିବାର ଆବଶ୍ୟକତା ଏ ସ୍ଥଳରେ ଉପଲବ୍ଧ ହେଉଅଛି ।

ସେ ସମୟରେ ଘୁମୁସର ରାଜଗୃହରେ ଧନଞ୍ଜୟଙ୍କ ପୃଷ୍ଠପୋଷକତାରେ ସଂସ୍କୃତ ସାହିତ୍ୟର ମୁହୁର୍ମୁହୁ ଆଲୋଚନା କରାଯାଉଥିଲା । ଯଦ୍ଦ୍ୱାରା ତହିଁରେ ଅନେକ ସଂସ୍କୃତ କବି ଓ ପଣ୍ଡିତଙ୍କ ସମାବେଶର ସୁବିଧା ସୁଯୋଗ ଘଟୁଥିଲା । ପୁରୀ ଗଜପତିଙ୍କ ରାଜସଭା ପଣ୍ଡିତ ସୁବିଖ୍ୟାତ "ପ୍ରେମପଞ୍ଚାମୃତ" ଗ୍ରନ୍ଥର ପ୍ରଣେତା ରାଜକବି ଭୂପତି ପଣ୍ଡିତ ମଧ୍ୟ ଅନେକ ସମୟରେ ତହିଁରେ ଯୋଗଦାନ କରୁଥିଲେ । ଉପେନ୍ଦ୍ରଙ୍କ ସାହିତ୍ୟପ୍ରତି ପ୍ରଗାଢ଼ ଅନୁରାଗ ଓ ଆକର୍ଷଣ ଥିବାର ହେତୁ ସଂସ୍କୃତ ସାହିତ୍ୟରେ ଆକର୍ଷିତ ହୋଇ ସେ ଉକ୍ତ ସଭାରେ ପ୍ରଣିଧାନ ପୂର୍ବକ ଅଂଶଗ୍ରହଣ କରୁଥିଲେ ଓ ସଂସ୍କୃତ ପଣ୍ଡିତବୃନ୍ଦଙ୍କ ସହ ସର୍ବଦା ଯୋଗାଯୋଗ ସ୍ଥାପନ କରି ସାହିତ୍ୟ ରଚନା ଦିଗରେ ଶିକ୍ଷା ଓ ପ୍ରେରଣା ଲାଭ କରୁଥିଲେ । ଫଳତଃ ନିଜର ଅଳ୍ପବୟସରୁ ସଂସ୍କୃତରେ ଆଶାନୁରୂପ ପାଣ୍ଡିତ୍ୟ ଲାଭକରି ନିଜ ଭାଷା ଓଡ଼ିଆରେ ସଂସ୍କୃତ ସାହିତ୍ୟ ଭଳି ଅଳଙ୍କାର

ଚକ୍ରବର୍ତ୍ତୀ (୧୮୯୮) ରାଧାସଲୀଳା, ମଧୁସୂଦନ ଦାସ (୧୯୦୩) ଲଡ଼ା ବା ଚଉତିଶା ଚନ୍ଦ୍ରକଳା, ଦାମୋଦର ରଥ (୧୯୦୬) ଦଶପୋଇ, ବଢ଼ାଇବୋଲି, ଜଗବନ୍ଧୁ ସିଂହ (୧୯୨୧) ବଟପାଣ୍ଡା, ହାସ୍ୟପ୍ରିୟ, କୃଷ୍ଣବିହାର, ଚିତ୍ରଲେଖା, ରାସଲୀଳା, ଗୋପାଳଚନ୍ଦ୍ର ପ୍ରହରାଜ (୧୯୩୦) ଛନ୍ଦମଞ୍ଜରୀ ଭାଗୀରଥି ମହାପାତ୍ର (୧୯୩୫) କାନ୍ତକଟକ, ହରେକୃଷ୍ଣ ମହତାବ (୧୯୪୮) ବାରପୋଇ, ସଂଗୀତ କୌମୁଦୀ, ଚଉପଦୀ, କେଳି ବାହୁଡ଼ା, ଚଉତିଶା, ବାରମାସୀ, ଦୁର୍ଗାସ୍ତୁତି, ଗଜନିସ୍ତାରଣ, ଗରୁଡ଼ଗୀତା, ଛତିଶ ରାଗ, ପଞ୍ଚଶାୟକ, ବିଚିତ୍ରରେଣୀଶୀ, ରଘୁନାଥ ବିଳାସ, ମଦନମଞ୍ଜରୀ, ତ୍ରିପୁରାସୁନ୍ଦରୀ, ଅନଙ୍ଗରେଖା, କଳିତ କଳ୍ପଲେଖା, ରସନିଧି, ବିଷ୍ଣୁଚରଣ ପଟ୍ଟନାୟକ (୧୯୫୦) ମିଳନମଞ୍ଜରୀ, ଦ୍ରୌପଦୀ ଚନ୍ଦ୍ରିକା, ମୁକ୍ତାବଳୀ, ଅନନ୍ତ ପଦ୍ମନାଭ ପଟ୍ଟନାୟକ (୧୯୫୯) ଚଉତିଶରାସ, ନୀଳାଦ୍ରୀଶ ଚଉତିଶା, ରାମକୃଷ୍ଣ ନନ୍ଦ (୧୯୬୨) ଛାନ୍ଦମଞ୍ଜରୀ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ (୧୯୬୫) ଲାବଣ୍ୟନିଧି, ଚିଟାଉଛାନ୍ଦ, ଗୌରୀ କୁମାର ବ୍ରହ୍ମା (୧୯୭୫) ନାରଦ ପୁରାଣ, ରସିକାନୁଚିନ୍ତା, ସତୀଶ ବିଳାସ, ଦମୟନ୍ତୀଶ ବିଳାସ, ଶବ୍ଦମାଳା, ପଦ୍ମାବତୀ ପରିଣୟ, ବସନ୍ତରାସ, ଷୋଳପୋଇ ଓ ରସପୋଇ, ଜୟକୃଷ୍ଣ ମିଶ୍ର (୧୯୭୭) କବିକଳ୍ପଲେଖା, ରମେଶ ଦାସ (୧୯୭୯) ଅନଙ୍ଗ ରଙ୍ଗଣୀ, ରବିନାୟକ (୧୯୮୫) ମହାନାଟକ, ରାମମୋହନ ଜେନା (୧୯୮୬) ଭଗବଦମାଳି, ସୁରେନ୍ଦ୍ର ମହାରଣା (୧୯୮୮) ଚଉତିଶାଚନ୍ଦ୍ର, ମାଗୁଣି ଦାସ (୧୯୮୯) ରସବତୀ ଆଦି ନୂତନ ଗ୍ରନ୍ଥର ନାମକୁ ଭଞ୍ଜଙ୍କ ରଚନାବଳୀର ଅନ୍ତର୍ଭୁକ୍ତ କରିଛନ୍ତି ।

୧୯୫୯ ମସିହାରୁ ଆରମ୍ଭ କରି ୧୯୮୯ ମସିହା ପର୍ଯ୍ୟନ୍ତ ବହୁ ଆଲୋଚକ, ଉପେନ୍ଦ୍ରଭଞ୍ଜଙ୍କ ରଚନାବଳୀର ତାଲିକା ବୁଝିବି ପାଇଁ ଲାଗିଥିଲେ ମଧ୍ୟ କେତେକ ଆଲୋଚକ ଶୁଣାକଥା ଉପରେ ନିର୍ଭର କରି ଏଭଳି ଏକ ତାଲିକା ପ୍ରସ୍ତୁତ ନିମନ୍ତେ ଅଗ୍ରସର ହୋଇଛନ୍ତି ବୋଲି ସନ୍ଦେହ ପ୍ରକାଶ ପାଉଛି । ଏଭଳି ଅବସ୍ଥାରେ ଉପେନ୍ଦ୍ରଭଞ୍ଜଙ୍କ ରଚନାବଳୀର ଏକ ପ୍ରକୃଷ୍ଟ ତାଲିକା ପ୍ରସ୍ତୁତ ଅତ୍ୟନ୍ତ ଦୁରୂହ ବ୍ୟାପାର ହୋଇପଡ଼ିଛି ।

ଅଧୁନା ଉପେନ୍ଦ୍ରଭଞ୍ଜଙ୍କ ରଚନାବଳୀର ନାମ ତାଲିକା ପ୍ରଦାନରେ ବହୁ ଆଲୋଚକ ବ୍ୟସ୍ତ ଥିବାବେଳେ ସର୍ବମୋଟ ୩୧ ଗୋଟି ଗ୍ରନ୍ଥ ମୁଦ୍ରିତ ରୂପ ଗ୍ରହଣ କରିଛି । ଏହି ୩୧ ଗୋଟି ଗ୍ରନ୍ଥ ହେଉଛି:- ଅବନାରସତରଙ୍ଗ, କଳାକଉତୁକ, ଗୁଣ୍ଡିଚାବି... କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ଗୀତାଭିଧାନ, ଚଉପଦୀ... ଚଉପଦୀଭୂଷଣ, ଚଉପଦୀହରା, ଚନ୍ଦ୍ରରେଖା (ଦୁଇଟିଛାନ୍ଦ), ଚିତ୍ରକାବ୍ୟ... ଛାନ୍ଦଭୂଷଣ, ଦଶପୋଇ, ପଞ୍ଚଶାୟକ, ପ୍ରେମସୁଧାନିଧି, ବଢ଼ାଇବୋଲି, ବୈଦେହୀଶବିଳାସ, ଭାବବତୀ, ମନରଞ୍ଜନ... ଚଉତିଶା, ରସପଞ୍ଚକ, ରସପୋଇ, ରସଲେଖା, ରସିକହାରାବଳୀ, ରାମଲୀଳାମୃତ, ଲାବଣ୍ୟନିଧି, ଲାବଣ୍ୟବତୀ, ଶୋଭାବତୀ, ଶ୍ରୀନୀଳାଦ୍ରୀଶଚଉତିଶା, ଶୋକପୋଇ, ସୁବର୍ଣ୍ଣରେଖା, ସୁଭଦ୍ରାପରିଣୟ, ସଙ୍ଗୀତ ଉପେନ୍ଦ୍ରଭଞ୍ଜ ।

ଉପରୋକ୍ତ ପ୍ରକାଶିତ ଗ୍ରନ୍ଥ ମଧ୍ୟରୁ ଦଶପୋଇ, ପଞ୍ଚଶାୟକ, ରସପୋଇ, ବଢ଼ାଇବୋଲି, ଶ୍ରୀନୀଳାଦ୍ରୀଶ ଚଉତିଶା ଆଦିର ସ୍ରଷ୍ଟାରୂପେ ଉପେନ୍ଦ୍ରଭଞ୍ଜଙ୍କୁ ଗ୍ରହଣ କରିବା ନିମନ୍ତେ କେତେକ ଆଲୋଚକ କୁଣ୍ଠା ପ୍ରକାଶ କରିବାବେଳେ ଶୋଭାବତୀ କାବ୍ୟ ନୟାଗଡ଼ ରାଜା ପୁରୁଷୋତ୍ତମ ମାନଧାତାଙ୍କ ନାମରେ ଭଣିତ ଥିବାରୁ ଏହାକୁ କବିଙ୍କର ଏକ ଦଣ୍ଡକାବ୍ୟ ରୂପେ ଗ୍ରହଣ କରି... ଏତଦ୍ ବ୍ୟତୀତ ରାଜ୍ୟ ସଂଗ୍ରହାଳୟ ବିଭିନ୍ନ ଅନୁଷ୍ଠାନ ଓ ବ୍ୟକ୍ତିବିଶେଷଙ୍କ ନିକଟରେ ରାମଚିଟାଉ, ସୀତାଚିଟାଉ, ନାରଦପୁରାଣ, ରସମଞ୍ଜରୀ, ଗୁପ୍ତବୋଲି ଅଳଙ୍କାର କୋଇଲି, ଶୀହେପଦିଆ, ଛପନପଦିଆ, ଚନ୍ଦ୍ରରେଖା, ଚିତ୍ରଲେଖା ଓ ମନୋରମା ଆଦି ରଚନା ଉପେନ୍ଦ୍ରଭଞ୍ଜଙ୍କ ନାମରେ ଭଣିତ ଥିବାର ଦେଖିବାକୁ ମିଳେ । ଏଗୁଡ଼ିକ ବିଧିପୂର୍ବକ ବିଶ୍ଳେଷଣ କଲେ ସଠିକ ବିବରଣୀ ମିଳିପାରିବ ।

ପରିଶେଷରେ ଓଡ଼ିଆ ସାହିତ୍ୟାକାଶର ଅମ୍ଳାନ ଜ୍ୟୋତିଷ୍କ ସଦୃଶ ଉପେନ୍ଦ୍ରଭଞ୍ଜଙ୍କ କୃତିଗୁଡ଼ିକର ଉଦ୍ଧାର ତଥା ସୁସମ୍ପାଦନ କରାଗଲେ ସେହି ମହନୀୟ ପ୍ରତିଭାଧରଙ୍କ "ଆଶୁ ଅନଳ ହୀରାରେ ନଲଭି ବିନାଶ, ପ୍ରକାଶ ହେଉ ଦେଶ ଦେଶ" ଉକ୍ତିର ସାର୍ଥକତା ପ୍ରତିପାଦିତ ହୋଇପାରନ୍ତା ।

---

ମାଷ୍ଟର-ଶ୍ରୀ ଗଣେଶ୍ୱର ମିଶ୍ର,
ବିଶ୍ୱନାଥ ପୁର, ପୁରୀ-୭୫୨୦୧୪ ।



ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ଭଞ୍ଜ ଫଳକ ଉଦ୍ଘାଟନ ।



କଳାହାଣ୍ଡି ଜିଲ୍ଲାର ଲାଞ୍ଜିଗଡ଼ ରୋଡ୍‌ଠାରେ ପୂର୍ବ ରାଷ୍ଟ୍ରମନ୍ତ୍ରୀ ଶ୍ରୀ କିରଣ ଚନ୍ଦ୍ର ସିଂହଦେଓ, ପ୍ରଧାନମନ୍ତ୍ରୀ ଶ୍ରୀ ପି: ଭି: ନରସିଂହ ରାଓ ଓ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ସମ୍ବର୍ଦ୍ଧନା ଜଣାଉଛନ୍ତି ।



ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ନୂତନ ଜଗତ୍‌ସିଂହପୁର ଜିଲ୍ଲା ଉଦ୍‌ଘାଟନ ।

ଶ୍ରୀମଣ୍ଡିତ ଉନ୍ନତ କାବ୍ୟ ରଚନା କରିବା ପାଇଁ ପୂର୍ଣ୍ଣତଃ ସମର୍ଥ ହୋଇପାରିଥିଲେ । କହିବା ବାହୁଲ୍ୟ ଯେ, ସେ ନିଜର କିଶୋର ବୟସରୁ ଲେଖାଲେଖିର ଆରମ୍ଭ କରିଥିଲେ ଓ ସେଗୁଡ଼ିକ ସଂସ୍କୃତ ପଣ୍ଡିତବୃନ୍ଦଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା ।

ଉପେନ୍ଦ୍ରଙ୍କ କବିତ୍ୱ ପ୍ରତିଭା ଭୂପତି ପଣ୍ଡିତ ଆଦୌ ସହ୍ୟ କରିପାରୁ ନ ଥିଲେ । ତାଙ୍କର ମନେ ହେଉଥିଲା – ଉପେନ୍ଦ୍ର ତାଙ୍କର କବି ସମ୍ମାନକୁ ଅଚିରେ ଧୂଳିସାତ୍ କରିଦେବ । ଏକଦା ସେ ଉପେନ୍ଦ୍ରଙ୍କୁ ପଚାରିଲେ– "ଉପେନ୍ଦ୍ର: ଦେଖ, ଅଦୂର ଭବିଷ୍ୟତରେ ତୁମର ପ୍ରଜାବୃନ୍ଦ ତୁମ ଉପରେ ରାଜ୍ୟ ପରିଚାଳନାର ଭାର ଗ୍ରହଣ କରିବାର ଆଶା କରନ୍ତି । ଏଣେ ତୁମ୍ଭେ କାବ୍ୟ ରଚନାରେ ସର୍ବଦା ବ୍ୟସ୍ତ । ଜାଣତ, ନିରବଚ୍ଛିନ୍ନ ସମୟ ନ ହେଲେ ଲେଖାଲେଖି କରି ହୁଏ ନାହିଁ । ପୁଣି ଏକ ଆଦର୍ଶ ରାଜା ପକ୍ଷରେ ତାହାତ ସମ୍ପୂର୍ଣ୍ଣ ଅସମ୍ଭବ । ଅତଏବ୍ ତୁମେ କେଉଁଟା ଚାହୁଁ– ରାଜା ହେବାକୁ, ନା କବି ? ଉପେନ୍ଦ୍ର ତହିଁର ଉତ୍ତରରେ କହିଥିଲେ– "ମୁଁ ରାଜା ହେବାକୁ ଚାହେଁ ନାହିଁ, ଚାହେଁ – ହେବାକୁ ଏକ ପ୍ରସିଦ୍ଧ କବି" । ଏଥିରେ ଭୂପତି ପଣ୍ଡିତ ଉପେନ୍ଦ୍ରଙ୍କ ପ୍ରତି ବିଶେଷ ଈର୍ଷାନ୍ୱିତ ହୋଇ ସେହିଦିନଠୁଁ ତାଙ୍କର ଅନିଷ୍ଟ ସାଧନର ବ୍ୟବସ୍ଥା ଆରମ୍ଭ କଲେ ।

ପରମ ସୁନ୍ଦରୀ ଓ ଗୁଣବତୀ ଏକ ରାଜକୁମାରୀଙ୍କୁ ଉପେନ୍ଦ୍ର ବିବାହ କରିଥିଲେ । ମାତ୍ର ଗୋଟାଏ ବର୍ଷ ମଧ୍ୟରେ ଘୁମୁସର ରାଜସିଂହାସନ ଆରୋହଣ ଜନିତ ବିବାଦ ଆଳରେ ଭୂପତିଙ୍କ ଚକ୍ରାନ୍ତରେ ରାଜପରିବାର ପକ୍ଷରୁ ହେମମାଳାଙ୍କୁ ଗୋପନରେ ବିଷଦେଇ ମାରି ଦିଆଗଲା । ଏଥିରେ ଉପେନ୍ଦ୍ର ଏକାନ୍ତ ମର୍ମାହତ ହୋଇ ଆଉ ଘୁମୁସରରେ ରହିବାକୁ ଇଚ୍ଛା କଲେନାହିଁ । ସେ ଚାଲିଗଲେ ନୂଆଗଡ଼କୁ । ସେଠାରେ ଶାନ୍ତିରେ ସମୟ ଅତିବାହିତ କରି ନିଜର କାବ୍ୟରଚନା ପିପାସା ଚରିତାର୍ଥ କରିପାରିଛନ୍ତି । ସେ ଅନ୍ୟୂନ ୬୦ ଖଣ୍ଡ କାବ୍ୟ ସଙ୍ଗୀତାଦି ଗ୍ରନ୍ଥର ରଚୟିତା । ଯାହାକି ଉତ୍କଳ ସାହିତ୍ୟର ଏକ ଏକ ଜ୍ୟୋତିର୍ମୟ ରତ୍ନ ସ୍ୱରୂପ ଚିରଦିନ ଦେଦୀପ୍ୟମାନ୍ । ଏବେ ଉଦାହରଣ ସ୍ୱରୂପ ତାଙ୍କ ସାହିତ୍ୟର ପାଣ୍ଡିତ୍ୟପୂର୍ଣ୍ଣ ଆବଶ୍ୟକୀୟ କେତେକାଂଶ ଏ ସ୍ଥଳରେ ଉଲ୍ଲେଖଯୋଗ୍ୟ ।

(୧) "ବନ୍ଦଇ ଦୀ (ଦୀ)ନ ବାନ୍ଧବ ହରି ଯେ ତମତନ୍ତ ଶାସନକାରୀ ସଦା କମଳାନନ୍ଦ ବିସ୍ତାରି ସ୍ୱାରାବେ ଲୀନ ଯେ", ଇତ୍ୟାଦି (ମଙ୍ଗଳାଚରଣ)

–ବୈଦେହୀଶ ବିଳାସ

ଏହା ଦ୍ୱିବିଧାର୍ଥକ । ପ୍ରଥମତଃ ବିଷ୍ଣୁ ଭଗବାନ ଓ ଦ୍ୱିତୀୟତଃ ସୂର୍ଯ୍ୟନାରାୟଣଙ୍କୁ ବୁଝାଇବାର ଅର୍ଥରେ ଉଦ୍ଦିଷ୍ଟ ।

(୨) "ଜୟ ଜୟ ଜୟ ରାମ ଜନକ ସୁଖଦ", ଇତ୍ୟାଦି (ମଙ୍ଗଳାଚରଣ)

–ଲାବଣ୍ୟବତୀ

ଏହା ତ୍ରିବିଧାର୍ଥକ । ଭଗବାନ ରାମଚନ୍ଦ୍ର, ଭଗବାନ ପର୍ଶୁରାମ ଓ ଭଗବାନ ବଳରାମ, ଏହି ତିନିଜଣଙ୍କ ପ୍ରତି ବୁଝାଇବାର ଅର୍ଥରେ ଉପସ୍ଥିତ ।

(୩) ବୀର ଯେତେ ସେନା ବାର ରସା ସାର ରବା ନାଶେ ହେବେ ଇରି, ବିହେ ତେଜି ପୁଚିତର ତମ ମତ ରତ ରିପୁ ଜିତେ ହେବି" ।

–ବୈଦେହୀଶ ବିଳାସ

ଅଳଙ୍କାର ଶାସ୍ତ୍ରରେ ଏହା ବିଲୋମ ଅନୁଲୋମ ନାମରେ ଅଭିହିତ । ଏଥିରେ ବିଶେଷତ୍ୱ ଏହି ଯେ, ଏହି ଉକ୍ତ ଧାଡ଼ି ବାମରୁ ଡାହାଣକୁ ପଢ଼ିଲେ ଯେଉଁଭଳି ହେଉଥିଛି, ଡାହାଣରୁ ବାମକୁ ପଢ଼ିଲେ ମଧ୍ୟ ସେହିପରି ହେଉଥିଛି ।

(୪) "ଆଶାରସ ଘନ କାଳ ହୋଇ ଉଦୟ,
ଅଶୀତ ପରବକରୁ ଦରସମୟ ।" ଇତ୍ୟାଦି

–କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ

ଏଥିର ବିଶେଷତ୍ୱ ଏହିପରି ଯେ, ସମ୍ପୂର୍ଣ୍ଣ ଛାନ୍ଦଟି ବର୍ଷାକାଳକୁ ବୁଝାଉଛି । ଏଥିର ପ୍ରତ୍ୟେକ ଧାଡ଼ିର ପ୍ରଥମ ବର୍ଣ୍ଣଗୁଡ଼ିକୁ ବାଦ୍ ଦେଲେ ଶୀତକାଳକୁ ଓ ପ୍ରଥମ ୨ଟି ଲେଖାଏଁ ବର୍ଣ୍ଣକୁ ବାଦ୍ ଦେଲେ ଖରାକାଳକୁ ବୁଝାଇବ ।

ଉପେନ୍ଦ୍ରଙ୍କ ମତରେ ପ୍ରାସ ଅନୁପ୍ରାସ ଯମକାଦି ବିଭିନ୍ନ ଅଳଙ୍କାରରେ କାବ୍ୟ ରଚିତ ହେବା ଉଚିତ । ଏହା ସେ ପୂର୍ଣ୍ଣତଃ ପାଳନ କରି ତଥା ସାହିତ୍ୟର ରସରାଜ ଶୃଙ୍ଗାରର ପ୍ରତ୍ୟେକ ବିଷୟର ବର୍ଣ୍ଣନା କରି ତହିଁର ଅନ୍ୟାନ୍ୟ ରସଗୁଡ଼ିକୁ ଉଚିତ ମର୍ଯ୍ୟାଦା ଦେଇ ନିଜ ସାହିତ୍ୟରେ ସୁଦ୍ଧିମନ୍ତ କରିଥିବାରୁ ସେ ହେଲେ କବିସମ୍ରାଟ ।

ଓଡ଼ିଆ ଭାଷାର ଉଚ୍ଛେଦ ସାଧନ ନିମିତ୍ତ ବଙ୍ଗାଳୀଙ୍କ ହୀନ ଚକ୍ରାନ୍ତ ଓ ପ୍ରଚେଷ୍ଟା ଓଡ଼ିଆ ଭାଷା ଇତିହାସର ଏକ ଅବିସ୍ମରଣୀୟ ଅଧ୍ୟାୟ । ସେତେବେଳେ ଏହାଠାରୁ ବଳି ଓଡ଼ିଆ ଜାତିର ଆଉ ଅନ୍ୟ କି ଦୁର୍ଦ୍ଦଶା ହୋଇପାରେ ? ସୁତରାଂ ତାହା ଓଡ଼ିଆଙ୍କର ଏକ ମହା ସଙ୍କଟର ସମୟ ରୂପେ ନିର୍ଦ୍ଧାରିତ । ଏହି ମହାସଙ୍କଟରୁ ନିଜ ମାତୃଭାଷାକୁ ବଞ୍ଚାଇ ରଖିବା ପାଇଁ କେତେକ ଓଡ଼ିଆ ବୀରପୁରୁଷଙ୍କୁ ପ୍ରାଣମୂର୍ଚ୍ଛା ଲଢ଼ିବାକୁ ପଡ଼ିଥିଲା । ତହିଁର ଶେଷ ନିଷ୍ପତ୍ତି ପାଇଁ ୧୮୭୨ରେ ଆମର ଚିର ପରିଚିତ ବ୍ୟାସକବି ଫକୀର ମୋହନ ସେନାପତିଙ୍କୁ ବଙ୍ଗଳାର ତତ୍କାଳୀନ ଗଭର୍ଣ୍ଣର ଜି: କ୍ୟାମ୍ପବେଲଙ୍କ ଦରବାରରେ ଓଡ଼ିଆ ସାହିତ୍ୟର ଗୁରୁତ୍ୱ ଓ ମହତ୍ୱ ପ୍ରତିପାଦନ କରିବାକୁ ପଡ଼ିଥିଲା । ସେ ଓଡ଼ିଆ ସାହିତ୍ୟର କେତେକ ବିଶେଷ କହିସାରି ଭଞ୍ଜ ସାହିତ୍ୟର ବିଭିନ୍ନ ପ୍ରକୃତି ବର୍ଣ୍ଣନା, ନାରୀରୂପ ବର୍ଣ୍ଣନା, ଲୋକଚରିତ୍ର ଚିତ୍ରଣାଦିର ଉଦାହରଣମାନ ଅତୀବ ସରଳ ପ୍ରାଞ୍ଜଳ ଭାବରେ ବୁଝାଇ ସାରି ଶେଷରେ ଉଲ୍ଲିଖିତ ତାଙ୍କ ସାହିତ୍ୟର ଦ୍ୱିବିଧାର୍ଥକ, ତ୍ରିବିଧାର୍ଥକ ତଥା ବିଲୋମ ଅନୁଲୋମାଦି ଆଳଙ୍କାରିକ ବିଭିନ୍ନ ପାଣ୍ଡିତ୍ୟପୂର୍ଣ୍ଣ ରଚନାମାନ ପାଠକରି ତହିଁର ସ୍ପଷ୍ଟଭାବ ଓ ଅର୍ଥମାନ ବୁଝାଇଥିଲେ । କ୍ୟାମ୍ପବେଲ ମହୋଦୟ ଏଥିରେ ମୁଗ୍ଧ ହୋଇ ଓଡ଼ିଆଭାଷା ଏକ ସ୍ୱତନ୍ତ୍ର ଭାଷା – ଏହା ସେ ସ୍ୱୀକାର କଲେ ।

ଏଥିରୁ ଭଞ୍ଜଙ୍କ ସେହି ପାଣ୍ଡିତ୍ୟପୂର୍ଣ୍ଣ ରଚନାର ମୂଲ୍ୟ ସହଜରେ ନିର୍ଦ୍ଧାରଣ କରାଯାଇପାରେ । ଭଞ୍ଜ ଆମ ଓଡ଼ିଆଙ୍କ ଗୌରବମୟ – ମହାଧନ । ତାଙ୍କ ସେଭଳି କବିତ୍ୱ ଯୋଗୁଁ ଓଡ଼ିଆ ଭାଷା ପୁନର୍ଜୀବନ ଲାଭ କରିପାରିଛି । ସେ ଆମର ନିତ୍ୟ ପ୍ରାତଃ ସ୍ମରଣୀୟ ।

ପୋ:ଅ:–ଲାଙ୍ଗୁଳା,
ଜି:–ବଲାଙ୍ଗୀର–୭୬୮୦୪୮ ।



ବଲାଙ୍ଗୀରସ୍ଥ ରାଜେନ୍ଦ୍ର ମହାବିଦ୍ୟାଳୟର ପୂର୍ବତନ ଲାଇବ୍ରେରିଆନ୍ ଡକ୍ଟର ରାଧାଗୋବିନ୍ଦ ଦାସଙ୍କୁ ଏବଂ ପାରାଦ୍ୱୀପ ବନ୍ଦରର ଶ୍ରୀ ସୁକାନ୍ତ ଚନ୍ଦ୍ରଙ୍କୁ ମାନ୍ୟବର ରାଜ୍ୟପାଳ ପ୍ରଫେସର ଏସ୍. ନୁରୁଲ୍ ହାସାନ୍ ୫୦୦୦ ଟଙ୍କା ସହିତ ମାନପତ୍ର ପ୍ରଦାନ କରୁଛନ୍ତି ।



ସୂଚନା ଭବନଠାରେ ଏକ ଉତ୍ସବରେ 'ଦକ୍ଷିଣ ପୂର୍ବ ଏସିଆକୁ ଜଳଯାତ୍ରା' ଶୀର୍ଷକ ଏକ ଆଲୋଚନା ଚକ୍ରରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ନିବେଦିତା ଆଗ୍ନେୟୀଙ୍କୁ ଏକ ରୌପ୍ୟ କୋଣାର୍କ ଚକ୍ର ପ୍ରଦାନ କରୁଛନ୍ତି ।



ଭୁବନେଶ୍ୱରଠାରେ ଅନୁଷ୍ଠିତ ଉତ୍କଳ ଦିବସ ସମାରୋହ ଉତ୍ସବରେ ମାନ୍ୟବର ରାଜ୍ୟପାଳ ପ୍ରଫେସର ଏସ୍. ନୁରୁଲ୍ ହାସାନ୍, ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ, ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାସ ଓ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା ।



ବାରିପଦା ଷ୍ଟାଡିୟମ୍‌ରେ ଆୟୋଜିତ ଜିଲ୍ଲାସ୍ତରୀୟ ପ୍ରଦର୍ଶନୀକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି ।

# ଉପେନ୍ଦ୍ର କାବ୍ୟର ନାମକରଣ କୌଶଳ

* ଅଧ୍ୟାପକ ଡଃ ବିବେକାନନ୍ଦ ପାଣିଗ୍ରାହୀ

ନାମକରଣ ଆମ ସାମାଜିକ ଜୀବନରେ ଏକ ସୁପ୍ରାଚୀନ ପରମ୍ପରା । ଏହା ମଣିଷର ବୋଧଶକ୍ତିର ପରିଚାୟକ । ଯୁଗ ଯୁଗ ଧରି ପରିଦୃଶ୍ୟମାନ ପରିବ୍ୟାପ୍ତ ପୃଥିବୀର ସମସ୍ତ ଜାଗତିକ ଲୌକିକ ଜଗତରେ ବା ସାଂସାରିକ କ୍ଷେତ୍ରରେ ନାମକରଣ ପ୍ରକ୍ରିୟାର ଯଥାର୍ଥତା ବହୁ ସମୟରେ ଉପଲବ୍ଧ ହୁଏ ନାହିଁ । କାରଣ ପିତାମାତା ଆପଣା ସନ୍ତାନର ନାମକରଣ ବେଳେ ବିଶେଷ ଗୁଣ, ରୂପ ବା ପ୍ରତିଷ୍ଠାସମ୍ପନ୍ନ ବ୍ୟକ୍ତିବିଶେଷ ଓ ଅଲୌକିକ ଶକ୍ତିସମ୍ପନ୍ନ ଦେବୀପୁରୁଷଙ୍କୁ ଆଖିରେ ରଖି କରିଥାନ୍ତି । ଫଳରେ ନାମକରଣରେ ନାମିତ ସନ୍ତାନ ରାଜୀବ ଲୋଚନ ହୋଇ ଅନ୍ଧ ହୋଇଥାଏ, କୁବେର ନାମଧାରୀ ବି ନିର୍ଦ୍ଧନ ହୋଇଥାଏ, ଗଣପତି ବି ଜ୍ଞାନଶୂନ୍ୟ ହୋଇଥାଏ, ସୌଭାଗ୍ୟ ନାମ୍ନୀ କନ୍ୟା ମଧ୍ୟ ଦୁର୍ଭାଗୀ ହୋଇଥାଏ ।

ବ୍ୟକ୍ତି, ବସ୍ତୁ, ପଶୁପକ୍ଷୀ ଓ ବୃକ୍ଷଲତାଦିର ନାମକରଣ ଓ ସାହିତ୍ୟ ସୃଷ୍ଟି ବା କାବ୍ୟ ସୃଷ୍ଟିର ନାମକରଣ ସମପର୍ଯ୍ୟାୟଭୁକ୍ତ ନୁହେଁ । ବ୍ୟକ୍ତିର ନାମକରଣ ସହ ତା'ର ରୂପ, ଗୁଣ, ଆକୃତି ଓ ପ୍ରକୃତିର ବିଶେଷ ସମ୍ପର୍କ ନଥାଏ । କିନ୍ତୁ କାବ୍ୟର ନାମକରଣ ସହ ତାର କଥାବସ୍ତୁ ଚରିତ୍ର ଓ ରଚନା ରୀତିର ବିଶେଷ ସମ୍ପର୍କ ଥାଏ । କାବ୍ୟ କବିର ମାନସ କନ୍ୟା ହୋଇଥିବାରୁ କବି ଆପଣା କାବ୍ୟ ସୃଷ୍ଟିର ନାମକରଣରେ ସାର୍ଥକତା ପ୍ରତିପାଦନ ପାଇଁ ସର୍ବଦା ଚେଷ୍ଟିତ ଥାନ୍ତି । ଆପଣା ସୃଷ୍ଟିର ଉତ୍କର୍ଷ ପ୍ରମାଣିତ କରିବାକୁ ଯାଇଁ ନାମକରଣରେ ସେ ନିଜସ୍ୱ ରୁଚି ଓ ଔଚିତ୍ୟ ଜ୍ଞାନର ପରିଚୟ ଦେଇଥାନ୍ତି । ସ୍ୱରଚିତ କାବ୍ୟକୁ କବି କାବ୍ୟ ପ୍ରେମୀ ପାଠକମାନଙ୍କ ହାତରେ ଅର୍ପଣ କରିବା ପୂର୍ବରୁ ଏକ ଆକର୍ଷଣୀୟ ତଥା ଶ୍ରୁତିମଧୁର ନାମକରଣରେ ନାମିତ କରିଥାନ୍ତି । କାବ୍ୟର ନାମକରଣ ମାଧ୍ୟମରେ ସୃଷ୍ଟିର ଅନ୍ତର୍ନିହିତ ବିଶେଷତ୍ୱ ପ୍ରକାଶିତ ହୋଇଥାଏ । ଅବାନ୍ତର ବା ଅପ୍ରାସଙ୍ଗିକ ନାମକରଣ ଦ୍ୱାରା କାବ୍ୟ ରଚନାର ମୂଲ୍ୟହାନି ଘଟିଥାଏ । ସୁତରାଂ କାବ୍ୟର ନାମକରଣରେ କବିର ଔଚିତ୍ୟବୋଧ ଏକାନ୍ତ ଆବଶ୍ୟକ । ଯେଉଁ ନାମରେ କବି ତା'ର କାବ୍ୟ ସୃଷ୍ଟିକୁ ଚିହ୍ନାଇ ଥାନ୍ତି ତାହା ତାଙ୍କ ସହୃଦ ଚେତନାର ବାହକ । ତାହା କେତେବେଳେ ଭାବାତ୍ମକ ତ କେତେବେଳେ ଗୁଣାତ୍ମକ, ପୁଣି କେତେବେଳେ ସାଙ୍କେତିକ ବା ପ୍ରତୀକଧର୍ମୀ । ଓଡ଼ିଆ କାବ୍ୟ ପରମ୍ପରାରେ ଏହି ନାମକରଣ କୌଶଳ ବିଭିନ୍ନ କବିଙ୍କ ଲେଖନୀରେ ଭିନ୍ନ ଭିନ୍ନ ରୂପଗତ ବୈଶିଷ୍ଟ୍ୟ ବହନ କରି ଆତ୍ମ ପ୍ରକାଶ କରିଛି ।

ପ୍ରାଚୀନ ଭାରତୀୟ ସାହିତ୍ୟରେ କାବ୍ୟର ନାମକରଣ ସମ୍ପର୍କରେ ବିଶିଷ୍ଟ ଆଚାର୍ଯ୍ୟମାନେ ଭିନ୍ନ ଭିନ୍ନ ମତପୋଷଣ କରିଛନ୍ତି । ବକ୍ରୋକ୍ତିର ପ୍ରବାଦର ପ୍ରବକ୍ତା ଆଚାର୍ଯ୍ୟ କୁନ୍ତକଙ୍କ ମତରେ "କାବ୍ୟର ବିଷୟବସ୍ତୁକୁ ସିଧାସଳଖ ଭାବେ ପ୍ରକାଶ କରୁଥିବା ନାମ ପରିତ୍ୟାଗ କରି ବକ୍ରୋକ୍ତି ଗର୍ଭିତ ତଥା ପ୍ରତୀକାତ୍ମକ ନାମକରଣ କରିବା ହେଉଛି ନାମ ନିର୍ବାଚନ ଦିଗରେ ଏକ ଚମତ୍କାର କୌଶଳ ।(୧) ତାଙ୍କ ମତରେ ନାମକରଣ ବକ୍ରତା ହେଉଛି ପ୍ରଧାନ କଥାବସ୍ତୁର ଦ୍ୟୋତକ ନାମ ନିର୍ବାଚନ" ଏହାଦ୍ୱାରା କବି କାବ୍ୟରେ ଅପୂର୍ବ ସୌନ୍ଦର୍ଯ୍ୟ ବା ବୈଦଗ୍ଧ ସୃଷ୍ଟି କରିବା ପାଇଁ ସମର୍ଥ ହୋଇଥାନ୍ତି ।(୨) କାବ୍ୟର ନାମକରଣ ସମ୍ପର୍କରେ କୁନ୍ତକଙ୍କ ଅଭିମତ ସଂସ୍କୃତ କାବ୍ୟ ସ୍ରଷ୍ଟାମାନଙ୍କୁ ବିଶେଷ ପ୍ରଭାବିତ କରିନଥିବା ସମକାଳୀନ ଓ ପରବର୍ତ୍ତୀକାଳୀନ ବହୁ କାବ୍ୟ ସୃଷ୍ଟିର ନାମକରଣମାନଙ୍କରୁ ଜଣାପଡ଼େ ।

ଆଳଙ୍କାରିକ ବିଶ୍ୱନାଥ କବିରାଜ ସାହିତ୍ୟ ଦର୍ପଣ ଗ୍ରନ୍ଥରେ କାବ୍ୟ ସିଦ୍ଧାନ୍ତର ବିଭିନ୍ନ ଦିଗ ଉପରେ ଆଲୋଚନା କରି ନାମକରଣର ଯଥାର୍ଥତା ଉପରେ ସମଧିକ ଗୁରୁତ୍ୱ ଆରୋପ କରିଛନ୍ତି । ତାଙ୍କ ମତରେ କାବ୍ୟର ନାମକରଣ କବି, କଥାବସ୍ତୁ, ନାୟକ କିମ୍ବା ଇତର ଚରିତ୍ରର ନାମାନୁଯାୟୀ ହେବା ବିଧେୟ ।(୩) ବିଶ୍ୱନାଥଙ୍କ ଅଭିମତର ପ୍ରଭାବ ବହୁ ସଂସ୍କୃତ ଓ ରୀତି ଯୁଗୀୟ ଓଡ଼ିଆ କାବ୍ୟମାନଙ୍କରେ ପରିଲକ୍ଷିତ ହୁଏ । ରୀତି ଯୁଗୀୟ ଓଡ଼ିଆ କାବ୍ୟ ସାହିତ୍ୟରେ ଅନୁସୃତ ନାମକରଣ କୌଶଳକୁ ପ୍ରଫେସର ଡଃ ସୁଦର୍ଶନ ଆଚାର୍ଯ୍ୟ କଥାବସ୍ତୁ ଭିତ୍ତିକ, ଘଟଣା ଭିତ୍ତିକ, ପାତ୍ର, ପାତ୍ରି ଭିତ୍ତିକ ଓ କାବ୍ୟ ବୈଚିତ୍ର୍ୟ ଭିତ୍ତିକ ଆଦି ଚାରୋଟି ବିଭାଗରେ ବିଭକ୍ତ କରିଥିବା ଜଣାଯାଏ ।(୪)

ମଧ୍ୟ ଯୁଗୀୟ ଓଡ଼ିଆ ରୀତି କାବ୍ୟ ଜଗତର ଅନନ୍ୟ ପ୍ରତିଭାଧର ଶିଳ୍ପୀ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ ନିର୍ମାଣ କୌଶଳର ବହୁବିଧ ବିଶେଷତ୍ୱ ମଧ୍ୟରେ ନାମକରଣ କୌଶଳ ଅନ୍ୟତମ । ଉପେନ୍ଦ୍ରଙ୍କ ବିପୁଳ କାବ୍ୟ ସମ୍ଭାର ଅନୁଧ୍ୟାନ ଓ ବିଶ୍ଳେଷଣ କଲେ କବିଙ୍କ ନାମକରଣ କୌଶଳର ବୈଚିତ୍ର୍ୟ ସୃଷ୍ଟି ଅବଧାରିତ ହୋଇଥାଏ । କବିଙ୍କ କାବ୍ୟମାନଙ୍କର ନାମକରଣକୁ ମୁଖ୍ୟତଃ ଚାରୋଟି ଭାଗରେ ବିଭକ୍ତ କରାଯାଇପାରେ । ଯଥା—ନାୟିକା ପ୍ରଧାନ, ନାୟକ ପ୍ରଧାନ, ବିଷୟବସ୍ତୁ ଓ କ୍ରିୟା ପ୍ରଧାନ ଏବଂ ଆଙ୍ଗିକ ବୈଶିଷ୍ଟ୍ୟ ପ୍ରଧାନ । ଉପରୋକ୍ତ ଚାରୋଟି ନାମକରଣ କୌଶଳ ମଧ୍ୟରୁ ଭଞ୍ଜ କବିଙ୍କ ସଂଖ୍ୟାଧିକ କାବ୍ୟରେ ନାୟିକା ପ୍ରଧାନ ନାମକରଣ କୌଶଳ ରୀତି ଅନୁସୃତ ହୋଇଥିବା ଲକ୍ଷ୍ୟ



ଜଳେଶ୍ୱରଠାରେ କବି ଦୀନକୃଷ୍ଣ ଜୟନ୍ତୀ ଉତ୍ସବରେ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନାଙ୍କ ଉଦ୍‌ବୋଧନ ।




ବଲାଙ୍ଗୀରଠାରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ଆୟୋଜିତ ବାବା ସାହେବ ଆମ୍ବେଦ୍‌କରଙ୍କ ଜୟନ୍ତୀ ଉତ୍ସବରେ ସମାଜସେବୀ ବିଶିଷ୍ଟ ଆଇନଜ୍ଞ ଶ୍ରୀ ସିଦ୍ଧେଶ୍ୱର ସାଇ ଅଭିଭାଷଣ ଦେଉଛନ୍ତି ।

ସେହିପରି ଅନ୍ୟ କେତୋଟି କାବ୍ୟ ଶ୍ରୀକୃଷ୍ଣ ବିହାର, କୁଞ୍ଜ ବିହାର, ସୁଭଦ୍ରା ପରିଣୟ, ପଦ୍ମାବତୀ ପରିଣୟ ପ୍ରଭୃତି ଶୃଙ୍ଗାର ପ୍ରଧାନ କାବ୍ୟମାନଙ୍କରେ ପ୍ରେମ ଓ ପ୍ରଣୟ ଭାବନା ଏବଂ ପରିଣୟର ବର୍ଣ୍ଣନା ବେଶି ପ୍ରଦାନ କରିଥିବାରୁ ଉକ୍ତ କାବ୍ୟମାନଙ୍କର ନାମକରଣ ପ୍ରଣୟସୂଚକ ହୋଇଅଛି । ଶ୍ରୀକୃଷ୍ଣ ବିହାର ଓ କୁଞ୍ଜ ବିହାର କାବ୍ୟ ଦ୍ୱୟରେ ଶ୍ରୀକୃଷ୍ଣଙ୍କ ପ୍ରେମାଭିସାରର ବର୍ଣ୍ଣନା ସ୍ଥାନ ପାଇଥିଲା ବେଳେ ସୁଭଦ୍ରା ପରିଣୟ ଓ ପଦ୍ମାବତୀ ପରିଣୟ କାବ୍ୟରେ ସୁଭଦ୍ରା ଓ ପଦ୍ମାବତୀଙ୍କ ପରିଣୟ ପ୍ରସଙ୍ଗ ବର୍ଣ୍ଣିତ ହୋଇଥିବାରୁ କବିଙ୍କ ଏପରି ନାମକରଣ ଏକାନ୍ତ ଯଥାର୍ଥ ଓ ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ ।

କଥାବସ୍ତୁ ଓ କାବ୍ୟଭାବନା ଭିତ୍ତିକ ନାମକରଣ ଦୃଷ୍ଟିରୁ ଭଞ୍ଜ କବିଙ୍କ ରସପଞ୍ଚକ, ହାସ୍ୟାର୍ଣ୍ଣବ, ଶୀତାଭିଧାନ, ଗଜ ନିସ୍ତାରଣ ଇତ୍ୟାଦି ରଚନାକୁ ବିଚାର କରାଯାଇ ପାରେ । ରସପଞ୍ଚକ, ହାସ୍ୟାର୍ଣ୍ଣବ ଓ ଶୀତାଭିଧାନ ସମ୍ପୂର୍ଣ୍ଣ ଭାବରେ କଥାବସ୍ତୁ ଭିତ୍ତିକ ବା ଅର୍ଥିକ ବିଷୟକୁ ନେଇ ନାମିତ ହୋଇଅଛି । ରସ ପଞ୍ଚକରେ ନବରସର ଶାସ୍ତ୍ରୀୟ ବ୍ୟାଖ୍ୟା, ହାସ୍ୟାର୍ଣ୍ଣବରେ ହାସ୍ୟରସର ପ୍ରଧାନ ଓ ଶୀତାଭିଧାନରେ ବିଭିନ୍ନ କାବ୍ୟରେ ବ୍ୟବହୃତ ଜଟିଳ ଶବ୍ଦାବଳୀର ସମାବେଶ ଲକ୍ଷ୍ୟକରା ଯାଏ । କାବ୍ୟଭାବନାଭିତ୍ତିକ ନାମକରଣ ଦୃଷ୍ଟିରୁ ଦୁର୍ଗାସ୍ତୁତି, ଗଜନିସ୍ତାରଣ, ପୁରୁଷୋତ୍ତମ ମାହାତ୍ମ୍ୟ, ନିଳାଦ୍ରୀଶ ଚଉତିଶା ଆଦି ବିଚାର୍ଯ୍ୟ । ଉପେନ୍ଦ୍ରଙ୍କ କାବ୍ୟ ସାଧନାର ଅନ୍ୟତମ ପ୍ରଧାନ ଉଚ୍ଚ ଭକ୍ତି ଭାବନାକୁ ଆଶ୍ରୟକରି ଉପରୋକ୍ତ ରଚନାବଳୀର ଭକ୍ତିସୂଚକ ନାମକରଣ କରାଯାଇଛି ।

ଆଙ୍ଗିକ ବୈଚିତ୍ର୍ୟ ଉପେନ୍ଦ୍ରଙ୍କ କାବ୍ୟ ସାଧନାର ଅନ୍ୟ ଏକ ବିଶେଷ ଦିଗ । ରୀତି ଯୁଗୀୟ କାବ୍ୟଧାରାର ବିଭିନ୍ନ ଆଙ୍ଗିକ ରୀତିକୁ ନେଇ ସେ ବହୁ ସଫଳ ପରୀକ୍ଷା କରିଛନ୍ତି । ଏହି ସମସ୍ତ ପରୀକ୍ଷା କେଉଁଠି ଛନ୍ଦ ବୈଚିତ୍ର୍ୟକୁ ନେଇତ, କେଉଁଠି ଅଳଙ୍କାର ଓ ଶବ୍ଦ ସଂଯୋଜନାକୁ ନେଇ । ସୁତରାଂ ଏହି ଆଙ୍ଗିକ ବିଶେଷତ୍ୱ ଭିତ୍ତିକ ଛନ୍ଦକାବ୍ୟ, ଗୀତିକାବ୍ୟ ଓ ଚଉପଦିମାନଙ୍କର ନାମକରଣ ଆଙ୍ଗିକ ସର୍ବସ୍ୱ ହୋଇଥିବା ପରିଦୃଷ୍ଟ ହୁଏ । ଏହି ଶ୍ରେଣୀୟ ରଚନାମାନଙ୍କ ମଧ୍ୟରେ ଛାନ୍ଦ ଭୂଷଣ, ଚଉପଦୀଚନ୍ଦ୍ର, ଅବନା ରସ ତରଙ୍ଗ, ଯମକରାଜ ଚଉତିଶା, ଷୋଳ ପୋଇ, ଦଶ ପୋଇ ଆଦି ପ୍ରଧାନ । ଛାନ୍ଦ ଭୂଷଣ ଚଉତିରିଶିଗୋଟି କ୍ଷୁଦ୍ର ଛାନ୍ଦରେ ଭୂଷିତ ଏକ କମନୀୟ ରଚନା ହୋଇଥିବାରୁ ଏହାର ନାମକରଣ ଯଥାର୍ଥ ମନେହୁଏ । ଅବନାରସ ତରଙ୍ଗ ବନାରହିତ କାବ୍ୟରଚନାର ଏକ ସଫଳ ପରୀକ୍ଷା । ସେହିପରି ସଂସ୍କୃତ ଚିତ୍ରକାବ୍ୟ ପରମ୍ପରାର ଅନୁସରଣରେ ଲିଖିତ ଚିତ୍ରକାବ୍ୟ ବନ୍ଧୋଦୟ ଚିତ୍ର ବନ୍ଧ ମାଧ୍ୟମରେ ରଚିତ ଏକ ପରୀକ୍ଷାମୂଳକ କାବ୍ୟ ରଚନା ହୋଇଥିବାରୁ ଉଭୟର ନାମକରଣରେ ସଫଳତା ନିହିତ । କବିଙ୍କ ଦଶ ପୋଇ, ଷୋଳ ପୋଇ ଚଉପଦି ଚନ୍ଦ୍ର, ଚଉପଦି ଭୂଷଣ, ବଜାର ବୋଲି, ନୀଳାଦ୍ରୀଶ ଚଉତିଶା, ଯମକରାଜ ଚଉତିଶା ଆଦି ପୋଇ, ଚୌପଦୀ, ବୋଲି, ଚଉତିଶା ଆଦି ରୀତିଯୁଗୀୟ ଗୀତିକାବ୍ୟର ବିଭିନ୍ନ ଆଙ୍ଗିକକୁ ନେଇ ରଚିତ ହୋଇଛି । ଯମକରାଜ ଚଉତିଶାରେ ଯମକ ଅଳଙ୍କାରର ଚମତ୍କାର ପ୍ରୟୋଗ ହୋଇ ନାମକରଣକୁ ସାର୍ଥକ କରିଅଛି । ଆଙ୍ଗିକ ସ୍ୱାତନ୍ତ୍ର୍ୟ ସର୍ବସ୍ୱ ଉପରୋକ୍ତ ରଚନା ମାନଙ୍କରେ କବିଙ୍କ ନାମକରଣଗତ ବୈଶିଷ୍ଟ୍ୟର ବିଶେଷ ପରିଚୟ ନମିଳିଲେ ସୁଦ୍ଧା ନାମକରଣରେ ଆଙ୍ଗିକ ପ୍ରଦାନ କୌଶଳର ଉପଯୋଗ କିପରି ଘଟିଛି ତାହା ବେଶ୍ ପରିଲକ୍ଷିତ ହୋଇଥାଏ ।

ଉପେନ୍ଦ୍ର ଭଞ୍ଜ ତାଙ୍କର ପ୍ରାୟ ସମସ୍ତ କାବ୍ୟର ନାମକରଣ ଆସିକ ଓ ଆଙ୍ଗିକ ବିଶେଷତ୍ୱ ସହ କଥାବସ୍ତୁର ଆଭିମୁଖ୍ୟକୁ ନେଇ କରିଥିବା ଜଣାଯାଏ । କାବ୍ୟର ଅନୁରୂପ ନାମକରଣ କରିବାରେ କବିଙ୍କ ସଫଳତା ସର୍ବତ୍ର ପରିଲକ୍ଷିତ । କବିଙ୍କ ରଚନା ବଳୀର ସାମଗ୍ରୀକ ଅନୁଶୀଳନରୁ ଜଣାପଡ଼େ ଯେ, କାବ୍ୟ ରଚନା କୌଶଳ ସହିତ କାବ୍ୟର ନାମକରଣ କୌଶଳର ସମଧିକ ବୈଚିତ୍ର୍ୟ ସମ୍ପାଦନ କରି ଉପେନ୍ଦ୍ର ରୀତିଯୁଗୀୟ କାବ୍ୟ ସରଣୀରେ ଆପଣାର ସ୍ୱାତନ୍ତ୍ର୍ୟ ପ୍ରତିପାଦିତ କରିଛନ୍ତି ।

**ପାଦଟୀକା**

(୧) ଓଡ଼ିଆ କାବ୍ୟ କୌଶଳ–ଡ଼ଃ ସୁଦର୍ଶନ ଆଚାର୍ଯ୍ୟ ପୃ–୨୨୮
(୨) ଓଡ଼ିଆ କାବ୍ୟ କୌଶଳ–ଡ଼ଃ ସୁଦର୍ଶନ ଆଚାର୍ଯ୍ୟ ପୃ–୨୨୫
(୩) ଓଡ଼ିଆ କାବ୍ୟ କୌଶଳ–ଡ଼ଃ ସୁଦର୍ଶନ ଆଚାର୍ଯ୍ୟ ପୃ–୨୨୫
(୪) ଓଡ଼ିଆ କାବ୍ୟ କୌଶଳ–ଡ଼ଃ ସୁଦର୍ଶନ ଆଚାର୍ଯ୍ୟ ପୃ–୨୨୫

ଓଡ଼ିଆ ଅଧ୍ୟାପକ,
କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ମହାବିଦ୍ୟାଳୟ,
ଭଞ୍ଜନଗର ।

କରାଯାଏ । ଉପେନ୍ଦ୍ରଙ୍କ ପ୍ରାୟ ଅଧିକାଂଶ ଜନପ୍ରିୟ କାବ୍ୟର ନାମକରଣ ନାୟିକା ପ୍ରଧାନ ।

ଏହି କୌଶଳ ଅବଲମ୍ବନ କରିବାରେ କବି ପୂର୍ବ ସୂରୀମାନଙ୍କ ଦ୍ୱାରା ବିଶେଷ ଭାବେ ପ୍ରଭାବିତ ହୋଇଥିବା ଅନୁମିତ ହୁଏ । ଉପେନ୍ଦ୍ରଙ୍କ ପୂର୍ବରୁ ବିଷ୍ଣୁ ଦାସଙ୍କ ପ୍ରେମଲୋଚନା, ନରସିଂହ ସେଣଙ୍କ ପରିମଳା, ପ୍ରତାପ ରାୟଙ୍କ ଶଶି ସେଣା, ଶ୍ରୀଧର ଦାସଙ୍କ କାଞ୍ଚନ ଲତା, ଧନଞ୍ଜୟ ଭଞ୍ଜଙ୍କ ଇଚ୍ଛାବତୀ, ଅନଙ୍ଗ ରେଖା, ତ୍ରିପୁର ମୋହିନୀ, ମଦନ ମଞ୍ଜରୀ ଆଦି କାବ୍ୟମାନଙ୍କର ନାୟିକା ଭିତ୍ତିକ ନାମକରଣ ଭଞ୍ଜ କବିଙ୍କୁ ଅବଶ୍ୟ ପ୍ରଭାବିତ କରିଥିବ । ରୀତି ଯୁଗର ପ୍ରମୁଖ କବି ଲୋକନାଥ ବିଦ୍ୟାଧର କାବ୍ୟରେ ନାୟିକାର ପ୍ରାଧାନ୍ୟ ସମ୍ପର୍କରେ ଲେଖିଛନ୍ତି—

"କାବ୍ୟରେ ନାୟିକା ସିନା ପ୍ରଧାନ,
ଏଣୁ ତା ଘେନି ସବୁ ରସ ମାନ ।"

ଉପେନ୍ଦ୍ର ରୀତି କାବ୍ୟର ଏହି ପ୍ରଚଳିତ ଧାରାକୁ ସ୍ୱୀକାର କରି ତାଙ୍କର କାଳ୍ପନିକ ଓ ପୌରାଣିକ କାବ୍ୟମାନଙ୍କରେ ନାୟିକାମାନଙ୍କର ନାମକୁ ନେଇ ନାମକରଣ କରିଛନ୍ତି । ଉପେନ୍ଦ୍ରଙ୍କ ବିଶାଳ କାଳ୍ପନିକ କାବ୍ୟ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଓ ଲାବଣ୍ୟବତୀଠାରୁ ଆରମ୍ଭ କରି ପ୍ରେମସୁଧାନିଧି, ରସିକ ହାରାବଳୀ, ରସଲେଖା, ହେମମଞ୍ଜରୀ, ଚିତ୍ରଲେଖା, ମନୋରମା, ପ୍ରେମଲତା, ଭାବବତୀ, ଶୋଭବତୀ, ତ୍ରୈଲୋକ୍ୟ ମୋହିନୀ, ଚନ୍ଦ୍ରକଳା, ଚନ୍ଦ୍ରରେଖା, ଶଶିରେଖା ଓ ସୁବର୍ଣ୍ଣରେଖା ଆଦି କ୍ଷୁଦ୍ର କାବ୍ୟ ପର୍ଯ୍ୟନ୍ତ ପ୍ରାୟ ସମସ୍ତ ରଚନାରେ କାବ୍ୟ ନାୟିକାର ପ୍ରାସଙ୍ଗିକ ପ୍ରାଧାନ୍ୟକୁ ନେଇ ନାମକରଣ କରାଯାଇଛି ।

ଉପେନ୍ଦ୍ରଙ୍କ ଲାବଣ୍ୟବତୀ କାବ୍ୟର ନାୟିକା ଲାବଣ୍ୟମୟୀ, ରୂପ ଯୌବନ ସମ୍ପନ୍ନା ଅତୁଳନୀୟ ସୁନ୍ଦରୀ । କବି କାବ୍ୟ ନାୟିକାର ସୌନ୍ଦର୍ଯ୍ୟ ପରିଚର୍ଯ୍ୟା ମାଧ୍ୟମରେ ଲାବଣ୍ୟବତୀ ନାମକରଣର ସାର୍ଥକତା ପ୍ରତିପାଦିତ କରିଛନ୍ତି । ସେହିପରି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ନାୟିକା ଗୋଟିଏ ବ୍ରହ୍ମାଣ୍ଡ ନୁହେଁ ବରଂ କୋଟିଏ ବ୍ରହ୍ମାଣ୍ଡର ସର୍ବ ଶ୍ରେଷ୍ଠ ସୁନ୍ଦରୀ ଭାବରେ କବି ଲେଖନୀରେ ଆତ୍ମ ପ୍ରକାଶ କରିଛି । ବିଂଶ ଛାନ୍ଦରେ କବି କାବ୍ୟ ନାୟିକା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ସୌନ୍ଦର୍ଯ୍ୟ ସମ୍ପର୍କରେ ଲେଖିଛନ୍ତି—

"ନାଗର ମଣି ସାର ସୁର–ଭୀ–ଧାମ,
ନାହିଁ ଶ୍ରୁତିରେ ତାହା କୀରତି ସମ ।
ସୁନା ସାଦୃଶ କାନ୍ତି କି ମନୋରମ,
କାମିନୀଚୟ ଧୈର୍ଯ୍ୟ ହତକୁ କ୍ଷମ ଯେ ।"

(କୋ: ବ୍ର: ସୁ: ୨୦/୨ ପଦ)

ଅର୍ଥାତ୍ ରାଜବାଳା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଅପରୂପା ନାଗକନ୍ୟାମାନଙ୍କଠାରୁ ଆହୁରି ସୁନ୍ଦରୀ ପୁଣି ସେ ସୁରଭି ବା ସୁଗନ୍ଧର ଭଣ୍ଡ । ତାଙ୍କ ପରି ସୁନ୍ଦରୀ ଥିବା କଥା କାନରେ କେବେ ଶୁଣାଯାଇ ନାହିଁ । ରତି ମଧ୍ୟ ତାଙ୍କ ସହ ସମକକ୍ଷ ନୁହନ୍ତି । ତାଙ୍କ ଶରୀରର ସ୍ୱର୍ଣ୍ଣକାନ୍ତି ଅତ୍ୟନ୍ତ ମନୋରମ ହୋଇଥିବାରୁ ସେ କାମୀ ପୁରୁଷମାନଙ୍କ ଧୈର୍ଯ୍ୟଚ୍ୟୁତି ଘଟାଇବାକୁ ସମ୍ପୂର୍ଣ୍ଣକ୍ଷମ ଅଟନ୍ତି ।

ସେହିପରି ପ୍ରେମସୁଧାନିଧି କାବ୍ୟରେ କାବ୍ୟ ନାୟିକା ପ୍ରେମ ସୁଧାନିଧିର ପ୍ରେମ ପ୍ରବଣତାକୁ ଲକ୍ଷ୍ୟ କରି କବି ତାଙ୍କୁ ପ୍ରେମର ସୁଧାନିଧି ଭାବରେ ବର୍ଣ୍ଣନା କରିଛନ୍ତି । ରସିକ ହାରାବଳୀ କାବ୍ୟର ନାମକରଣ ମଧ୍ୟ ନାୟିକା ଭିତ୍ତିକ । ଏଥିରେ ରସିକ ହାରାବଳୀକୁ କବି ରସିକମାନଙ୍କ ହାରତୁଲ୍ୟ ବୋଲି ବର୍ଣ୍ଣନା କରି ନାୟିକା ନାମାନୁସାରେ କାବ୍ୟର ନାମକରଣ କରିଛନ୍ତି । ସେହିପରି ଶୋଭାମୟୀ ନାୟିକାକୁ ନେଇ ଶୋଭାବତୀ, ଭାବପ୍ରବଣା ନାୟିକାକୁ ନେଇ ଭାବବତୀ, ପ୍ରେମମୁଗ୍ଧା ନାୟିକାକୁ ନେଇ ପ୍ରେମଲତା, ସ୍ୱର୍ଣ୍ଣ ମୁକୁଳ ପରି ପ୍ରତିୟମାନା ନାୟିକାକୁ ନେଇ ହେମ ମଞ୍ଜରୀ, ସ୍ୱର୍ଣ୍ଣରେଖାତୁଲ୍ୟ ନାୟିକାକୁ ନେଇ ସୁବର୍ଣ୍ଣରେଖା, ତ୍ରିଲୋକ ସମ୍ମୋହନକାରିଣୀ ନାୟିକାକୁ ନେଇ ତ୍ରୈଲୋକ୍ୟ ମୋହିନୀ, ମନୋରମ ସୁନ୍ଦରୀକୁ ନେଇ ମନୋରମା, ଚନ୍ଦ୍ରକାନ୍ତିତୁଲ୍ୟ ନାୟିକାକୁ ନେଇ ଶଶିରେଖା ଓ ଚନ୍ଦ୍ରରେଖା କାବ୍ୟର ନାମକରଣ କରାଯାଇଛି । ଉପରୋକ୍ତ କାବ୍ୟମାନଙ୍କରେ ନାୟିକାର ପ୍ରାଧାନ୍ୟ ଓ ମହତ୍ତ୍ୱ ବିଶେଷ ଭାବରେ ପରିଲକ୍ଷିତ ହେଉଥିବାରୁ ନାୟିକା ଭିତ୍ତିକ ନାମକରଣ ଏକାନ୍ତ ଯୁକ୍ତିଯୁକ୍ତ ମନେ ହୁଏ ।

ନାୟକ ପ୍ରଧାନ ନାମକରଣ ଦୃଷ୍ଟିରୁ ଭଞ୍ଜ କବିଙ୍କ ବୈଦେହୀଶ ବିଳାସ, ରାମଲୀଳାମୃତ, ଶ୍ରୀକୃଷ୍ଣ ବିହାର ଆଦି କାବ୍ୟର ବିଚାର କରାଯାଇପାରେ । ଏହି ପୌରାଣିକ ମହାକାବ୍ୟର ନାୟକ ଭୂମିକାରେ ଦଣ୍ଡାୟମାନ ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ରଙ୍କ କାବ୍ୟିକ ପ୍ରାଧାନ୍ୟକୁ ନେଇ କାବ୍ୟର ନାମକରଣ କରାଯାଇଥିଲେ ବି କବି ଏଠାରେ ରଘୁନାଥ, ଦାଶରଥୀ ଆଦି ନାମରେ ନାମିତ ରାମଚନ୍ଦ୍ରଙ୍କୁ ବୈଦେହୀଶ ଭାବରେ ନାମିତ କରିବାରେ ତାତ୍ପର୍ଯ୍ୟ ନିହିତ । ଏଠାରେ ଭଞ୍ଜ କବି ରାମଚନ୍ଦ୍ରଙ୍କୁ ସତୀ ଶିରୋମଣି ବିଦେହ ରାଜନନ୍ଦିନୀ ବୈଦେହୀଙ୍କ ଈଶ ଭାବରେ ଆଖ୍ୟାୟିତ କରିବା ଦ୍ୱାରା ରାମଚନ୍ଦ୍ରଙ୍କ ଗୁଣିଧିକ ଉତ୍କର୍ଷ ପ୍ରତିପାଦନ ଦିଗରେ ବୈଦେହୀଙ୍କ କାବ୍ୟିକ ଭୂମିକା ପ୍ରତି ପାଠକୀୟ ଦୃଷ୍ଟି ଆକର୍ଷଣ କରିଛନ୍ତି । ପୁଣି କାବ୍ୟରେ ସତ୍ୟନିଷ୍ଠ, ପ୍ରଜାନୁରଞ୍ଜକ, ବୀର ପୁଙ୍ଗବ ରାମଚନ୍ଦ୍ରଙ୍କ ବ୍ୟକ୍ତିତ୍ୱର ବହୁମୁଖୀ ଦିଗ ଉଦ୍ଘାଟିତ ହୋଇଥିଲେ ବି ରାଜରାଣୀ ସୀତାଙ୍କ ସହ ତାଙ୍କର ପ୍ରେମ ଓ ଲୀଳା ବିଳାସର ଚିତ୍ର ମଧ୍ୟ ପ୍ରାଧାନ୍ୟ ଲାଭ କରିପାରିଛି । ଏହି ଦୃଷ୍ଟିରୁ ବୈଦେହୀଶ ବିଳାସ କାବ୍ୟର ନାମକରଣ ଇଙ୍ଗିତ' ଧର୍ମୀ ମନେହୁଏ ।

ସେହିପରି ଉପେନ୍ଦ୍ରଙ୍କ କେତେକ ନାୟକ ଓ ନାୟିକା ପ୍ରଧାନ କାବ୍ୟର ନାମକରଣରେ ନାୟକ ନାୟିକାଙ୍କ କ୍ରିୟାକଳାପର ପ୍ରାଧାନ୍ୟ ସୂଚିତ ହୋଇଥାଏ । ଏହି ଶ୍ରେଣୀର ରଚନାମାନଙ୍କ ମଧ୍ୟରେ କୁଞ୍ଜ ବିହାର, ରାମଲୀଳାମୃତ, ବ୍ରଜ ଲୀଳା, କଳାକଉତୁକ, ସୁଭଦ୍ରା ପରିଣୟ ଓ ବ୍ରହ୍ମାବତୀ ପରିଣୟ ଆଦି ପ୍ରଧାନ । ଏହିସବୁ କାବ୍ୟମାନଙ୍କରେ ନାୟକ ନାୟିକାଙ୍କ ପ୍ରଧାନ୍ୟ ସହ କାବ୍ୟର ବିଷୟ ବସ୍ତୁରେ ପରିଦୃଷ୍ଟ ସେମାନଙ୍କ କ୍ରିୟାକଳାପର ସଂଯୋଗରେ ନାମକରଣ କରାଯାଇଛି । କବିଙ୍କ ବ୍ରଜଲୀଳା, ରାମଲୀଳାମୃତ ଓ କଳାକଉତୁକ କାବ୍ୟତ୍ରୟରେ ଯଥାକ୍ରମେ ଶ୍ରୀକୃଷ୍ଣଙ୍କ ଗୋପଲୀଳା, ରାମଚନ୍ଦ୍ରଙ୍କ ଆଦ୍ୟଜୀବନର ଲୀଳାଚରିତ ଏବଂ ରାଧାକୃଷ୍ଣଙ୍କ ଲୀଳା କୌତୁକର କମନୀୟ ବର୍ଣ୍ଣନା ସ୍ଥାନ ପାଇଥିବାରୁ ଏସବୁ କାବ୍ୟଗୁଡ଼ିକର ନାମକରଣ ଏଭଳି କ୍ରିୟାଭିତ୍ତିକ ହୋଇଛି ।

ଗ୍ରନ୍ଥ ଗ୍ରହଣ କରାଯାଏ । ଧନଞ୍ଜୟଙ୍କ ଦ୍ୱାରା ରଚିତ ୯ ଖଣ୍ଡ ଗ୍ରନ୍ଥ ମଧ୍ୟରୁ "ଶ୍ରୀ ରାମ ବିଳାସ" କାବ୍ୟ ଅନ୍ୟତମ । କଥିତ ଅଛି ପିତାମହ ଧନଞ୍ଜୟ ଏହି କାବ୍ୟଟି ରଚନା କରିସାରିବା ପରେ ନାତି ଉପେନ୍ଦ୍ରଙ୍କୁ କାବ୍ୟ ସମ୍ବନ୍ଧରେ କିଛି ମତ ଦେବାକୁ କହିଲେ । ଉପେନ୍ଦ୍ର ଭଞ୍ଜ କହିଲେ ଆଉ ଟିକିଏ ଅଳଙ୍କାରର ଆବଶ୍ୟକତା ଥିଲା । ପିତାମହ ଧନଞ୍ଜୟଙ୍କୁ ସେ ଏକବର୍ଷ ସମୟ ଭିତରେ ଏହିପରି ଆଉ ଏକ କାବ୍ୟ ରଚନା କରିବେ ବୋଲି ଦୃଢ଼ ପ୍ରତିଶ୍ରୁତି ଦେଇଥିଲେ । ପ୍ରତିଶ୍ରୁତି ପୂରଣ କରିବା ପାଇଁ ଉପେନ୍ଦ୍ର ଭଞ୍ଜଙ୍କୁ ରାମ ତାରକ ମନ୍ତ୍ର ଜପ କରିବାକୁ ପଡ଼ିଥିଲା । ଏଥିରେ ସିଦ୍ଧିଲାଭ କରି ସେ 'ବୈଦେହୀଶ ବିଳାଶ' ନାମକ କାବ୍ୟ ଶ୍ରୀରାମଙ୍କ ଲୀଳା ସମ୍ପର୍କରେ ରଚନା କରିଥିଲେ । ଏହାର ଆଦ୍ୟ ଅକ୍ଷର ଥିଲା 'ବ' ୫୨ଟି ଛାନ୍ଦ ବିଶିଷ୍ଟ ଏହି କାବ୍ୟଟି ୫୨ ସପ୍ତାହ ସମୟ ମଧ୍ୟରେ ସମ୍ପୂର୍ଣ୍ଣ କରିଥିଲେ ।

କୁଳାଡ଼ଗଡ଼ ଭଞ୍ଜ ନଗରଠାରୁ ମାତ୍ର ୮ କିଲୋମିଟର ଦୂର । ଏହି ଗଡ଼ର ପୂର୍ବ ପଟରେ ଗଞ୍ଜାମର ବଡ଼ ନଦୀ ବା ମହାନଦୀ ପ୍ରବାହିତ । ପଶ୍ଚିମରେ ଘନ ଜଙ୍ଗଲ ପରିପୂର୍ଣ୍ଣ ପର୍ବତମାଳା ଅବସ୍ଥିତ । ରାଜାଙ୍କର ରାଜନଗର ଥିଲା ପର୍ବତର ବକ୍ଷ ଦେଶରେ । ଏ ପର୍ଯ୍ୟନ୍ତ ତା'ର ଭଗ୍ନାବଶେଷ ରହିଛି । ଭୂମିଠାରୁ ପ୍ରାୟ ୨୦୦-୨୫୦ ଫୁଟ ଉଚ୍ଚରେ ଏକ ବିରାଟ ପଥର ପଡ଼ି ରହିଥିବାର ଦେଖାଯାଏ । ଏ ପଥରର ଉପର ପଟ ଗୋଟିଏ ବିରାଟ ଅଗଣା ପରି ମନେ ହୁଏ । ଲୋକମାନେ ଏହାକୁ 'ବେହରଣ ଗୁଣ୍ଡଡ଼ା' ବୋଲି କହନ୍ତି । ରାଜା ଧନଞ୍ଜୟ ସେ ପଥର ଉପରେ ବସି ଗଡ଼ ଘେରି ପାଖର ପ୍ରାକୃତିକ ଶୋଭା ଦେଖୁଥିବାର ପ୍ରବାଦ ରହିଛି । ସମୟ ସମୟରେ ସେଠାରେ କବି ସମ୍ମିଳନୀ ପଣ୍ଡିତ ସଭା, କବିତ୍ୱ ପରୀକ୍ଷା ଇତ୍ୟାଦି ହେଉଥିଲା । କବି ଉପେନ୍ଦ୍ର ଭଞ୍ଜ ମଧ୍ୟ ସେହି 'ବେହରଣ ଗୁଣ୍ଡଡ଼ା' ଉପରେ ବସି ଓଡ଼ଗାଁର ପ୍ରସିଦ୍ଧ ରଘୁନାଥ ମନ୍ଦିର ଦର୍ଶନ କରିବା ସହ କାବ୍ୟ କବିତା ରଚନା କରୁଥିବାର ବାସ୍ତବତା ଅଛି ବୋଲି କେତେକ ମତ ପୋଷଣ କରିଥାନ୍ତି ।

ଉପେନ୍ଦ୍ରଭଞ୍ଜ ତାଙ୍କ ଜୀବନକାଳ ମଧ୍ୟରେ ବହୁ କାବ୍ୟ କବିତା ରଚନା କରିଯାଇଛନ୍ତି । ତନ୍ମଧ୍ୟରେ 'ବ' ଆଦ୍ୟ ଅକ୍ଷର ରଖି "ବୈଦେହୀଶ ବିଳାଶ", 'ସ' 'ସୁଭଦ୍ରା ପରିଣୟ', 'କ' ଆଦ୍ୟ ଅକ୍ଷର ରଖି "କଳା କୌତୁକ" ତା'ଛଡ଼ା ଅଳଙ୍କାର ମଣ୍ଡିତ କାବ୍ୟ "କୋଟିବ୍ରହ୍ମାଣ୍ଡ ସୁନ୍ଦରୀ", "ରସିକ ହାରାବଳୀ", "ପ୍ରେମ ସୁଧାନିଧି" ଇତ୍ୟାଦି ରଚନା କରିଯାଇଛନ୍ତି । କବି ଉପେନ୍ଦ୍ର ଭଞ୍ଜ ଓଡ଼ିଶାରେ ଅସାଧାରଣ ଜନପ୍ରିୟତା ହାସଲ କରିବାରେ ପ୍ରଥମ । ସେ ବୋଧହୁଏ ଓଡ଼ିଶାର ସର୍ବପ୍ରଥମ କବି ଯାହାଙ୍କର ପାଣ୍ଡିତ୍ୟ ଓ କବିତ୍ୱ ସାଧାରଣ ଲୋକଙ୍କଠାରୁ ଆରମ୍ଭ କରି ସାଧୁସଜ୍ଜନ ତଥା ପଣ୍ଡିତ ମଣ୍ଡଳୀ ପର୍ଯ୍ୟନ୍ତ ସମସ୍ତଙ୍କ ପ୍ରଶଂସାଭାଜନ ହୋଇପାରିଛି । ସେଥି ପାଇଁ ପଣ୍ଡିତ ଗୋପବନ୍ଧୁ ଦାସ ଯଥାର୍ଥରେ ଲେଖିଯାଇଛନ୍ତି :

ଗାଏ ତୁମ୍ଭ ଗୀତ ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା
ବିଲେ ବୋଲେ ଚଷା ଅନ୍ତଃପୁରେ ଯୋଷା
ହିତ୍ୟ ରଙ୍ଗେ ବାରଙ୍ଗନା

ଉପେନ୍ଦ୍ର ଭଞ୍ଜଙ୍କୁ କବି ସମ୍ରାଟ କୁହାଯାଏ । ତାଙ୍କ ସମୟରୁ ଆଜି ପର୍ଯ୍ୟନ୍ତ ଭଞ୍ଜ କବି ବା କବି ସମ୍ରାଟ କହିଦେଲେ କେବଳ ତାଙ୍କୁ ହିଁ ବୁଝାଏ । ତେବେ ଏ ଉପାଧି ତାଙ୍କୁ କେବେ ମିଳିଥିଲା, କିଏ ଦେଇଥିଲା ତା'ର ମଧ୍ୟ ସଠିକ ତଥ୍ୟ ମିଳେ ନାହିଁ । ଅଧ୍ୟାପକ ଗୌରୀକୁମାର ବ୍ରହ୍ମାଙ୍କ ଭାଷାରେ ଉପେନ୍ଦ୍ର ଭଞ୍ଜ ଓଡ଼ିଶାର ବହୁ ରାଜ ଦରବାରରେ ନିଜର ଅପୂର୍ବ ପାଣ୍ଡିତ୍ୟ ଓ କବିତ୍ୱ ଦ୍ୱାରା ସମସ୍ତଙ୍କୁ ହୀନପ୍ରଭ କରି ଦେଇଥିଲେ । ଏପରିକି ମହା ମହା ସଂସ୍କୃତ ପଣ୍ଡିତ ପ୍ରତିଭା ଦେଖି ଭୟଭୀତ ହୋଇ ପଡ଼ିଥିଲେ । ରାଜା ସଭାମାନଙ୍କରେ ରାଜ୍ୟର ମାନ୍ୟଗଣ୍ୟ ଲୋକେ ମଧ୍ୟ ଶ୍ରୋତା ଭାବରେ ଦର୍ଶକ ଭାବରେ ଉପସ୍ଥିତ ହେଉଥିଲେ । ଯୁକ୍ତିତର୍କ ବାଦାନୁବାଦ କବିତ୍ୱ ପରୀକ୍ଷାରେ ଉପେନ୍ଦ୍ର ସମସ୍ତଙ୍କୁ ଟପି ଯାଉଥିବାର ଦେଖି ସେମାନେ ହୁଏତ କହି ପକାଉଥିଲେ ଇଏ 'କବି ସମ୍ରାଟ' । କାଳକ୍ରମେ ଏହି ଶବ୍ଦଟି ତାଙ୍କଠାରେ ରୂଢ଼ ହୋଇ ଗଲା । ଯଥାର୍ଥରେ ସେ ଆଜି ପର୍ଯ୍ୟନ୍ତ କବି ସମ୍ରାଟ ହୋଇ ରହିଛନ୍ତି । ଭଞ୍ଜ କହିଲେ ଯେପରି ଉପେନ୍ଦ୍ର ଭଞ୍ଜ ହିଁ ବୁଝାଯାନ୍ତି, ଏହିପରି ଉପାଧିର ଗୌରବ ଅନ୍ୟ କୌଣସି କବିଙ୍କ ଭାଗ୍ୟରେ ଯୁଟି ନାହିଁ ।

ଭଞ୍ଜଙ୍କର କାବ୍ୟ କବିତା ତାଙ୍କ ସମ ସାମୟିକ ତଥା ପରବର୍ତ୍ତୀ ଯୁଗର କବିମାନଙ୍କୁ ବିମୋହିତ କରିଥିଲା । ପ୍ରତିଭା ଈଶ୍ୱର ଦତ୍ତ । ଈଶ୍ୱରଙ୍କ ଆଶୀର୍ବାଦ ନଥିଲେ କେହି କେବେ ଏତେ ପ୍ରଚଣ୍ଡ ପ୍ରତିଭାର ଅଧିକାରୀ ହୋଇ ନପାରେ । ବହୁ କବି ଭଞ୍ଜଙ୍କର ପ୍ରଶଂସାରେ ଶତମୁଖ ହୋଇ ଉଠିଛନ୍ତି । କବିବର ରାଧାନାଥ ରାୟ ସ୍ୱୀକାର କରିଛନ୍ତି ଉପେନ୍ଦ୍ର ଭଞ୍ଜ ଓଡ଼ିଶାର ଶ୍ରେଷ୍ଠ କବି । ଗତ ଶତାବ୍ଦୀର ଶେଷ ଦଶକରେ ଇନ୍ଦ୍ରଧନୁ ନାମକ ଏକ ପତ୍ରିକାରେ କବି ଗୋପାଳ ବଲ୍ଲଭ ଦାସ ତାଙ୍କର ଏକ କବିତାରେ ଲେଖିଛନ୍ତି :

ଭଞ୍ଜ କୁଳ କଞ୍ଜ ଉପଇନ୍ଦ୍ର ବୀରବର,
ଧନ୍ୟ ଧନ୍ୟ ନୀଳକଣ୍ଠ ନୃପତି ନନ୍ଦନ ।
ଆବାଳ ବନୀତା ବୃଦ୍ଧ ହୃଦସ୍ଥ ଚନ୍ଦନ,
ଋତୁପତି ସହଚର ମତ ପିକବର ।
ପୂର୍ଣ୍ଣ ଶଶଧର କିବା ମଳୟ ପବନ,
ପରି, ସୁଧା ଜିଣା ତବ ସଙ୍ଗୀତ ଲହରୀ ।
ତରଙ୍ଗେ ତରଙ୍ଗେ ଦିଗ ବିଦିଗେ ପ୍ରସରି
ପ୍ରାସାଦେ କୁଟୀରେ କରେ ଚିତ୍ତ ବିନୋଦନ ।
ଦେଖେ ଯେବେ ପଥେ ଘାଟେ ମଳିନ ବସନ,
ପିନ୍ଧି ଦୀନ ହୀନ ତବ ମଧୁର ସଙ୍ଗୀତ ।
ଗାଇ ସର୍ବ ଦୁଃଖ ଭୁଲି ପ୍ରଫୁଲ୍ଲ ବଦନ,
ତବଗୁଣ ଭାବି ହୁଏ ଚକିତ, ବିସ୍ମିତ ।
କାବ୍ୟଙ୍କ କୁହୁକ ଧନ୍ୟ ସାର୍ଥକ ଜୀବନ,
କରି କାଳେ କାଳେ ପର ଦୁଃଖ ବିମୋଚନ ।

କବିବର ରାଧାନାଥ ରାୟ, ଭକ୍ତ କବି ମଧୁସୂଦନ, ଫକୀର ମୋହନ, ଉତ୍କଳମଣି ଗୋପବନ୍ଧୁ, ପଲ୍ଲୀକବି ନନ୍ଦକିଶୋର, କବି ଗଙ୍ଗାଧର, ପଣ୍ଡିତ ଗୋଦାବରୀଶ ମିଶ୍ର, ନାରୀ କବି କୁନ୍ତଳା କୁମାରୀ ଆଶ୍ଚର୍ଯ୍ୟ, ସତ୍ୟବାଦୀ

# ଏକ ଅମ୍ଳାନ ପ୍ରତିଭା — ଉପେନ୍ଦ୍ର ଭଞ୍ଜ

* ଶିରୋମଣି ସାହୁ

କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଗଞ୍ଜାମ ଜିଲ୍ଲାର ଭଞ୍ଜନଗର ସଦରଠାରୁ ମାତ୍ର ୮ କିଲୋମିଟର ଦୂରରେ ଅବସ୍ଥିତ କୁଲାଡ଼ଗଡ଼ର ପ୍ରସିଦ୍ଧ ଭଞ୍ଜ ରାଜବଂଶରେ ଜନ୍ମ ଗ୍ରହଣ କରିଥିଲେ । କବିଙ୍କର ଜନ୍ମ ମସିହା ଏ ପର୍ଯ୍ୟନ୍ତ ସଠିକ୍ ଭାବେ ନିରୂପିତ ହୋଇ ପାରି ନାହିଁ । ତେବେ କେତେକ ୧୬୭୦କୁ କବିଙ୍କର ଜନ୍ମ ମସିହା ବୋଲି ମତ ଦେଲା ବେଳେ ଆଉ କେତେକ ୧୬୮୮ ବୋଲି ମତ ଦେଇଥାନ୍ତି । ଘୁମୁସର ରାଜାଙ୍କର ଥିବା ମୂଲ୍ୟବାନ୍ ନଥିପତ୍ର ସବୁ ସେତେବେଳର ଗୋରା ସାହେବମାନଙ୍କ ଆକ୍ରମଣ ଫଳରେ ନଷ୍ଟ ହୋଇ ଯାଇଥିବାରୁ କବିଙ୍କର ଜନ୍ମ ଏବଂ ମୃତ୍ୟୁ ଦିବସ ସଠିକ୍ ଭାବେ ନିରୂପିତ ହୋଇ ପାରିନାହିଁ । କେତେକ ମଇ ମାସ ୧୬ ତାରିଖରେ ଭଞ୍ଜ ଜୟନ୍ତୀ ପାଳନ କରୁଥିବା ବେଳେ ଆଉ କେତେକ ପବିତ୍ର ଶ୍ରୀପଞ୍ଚମୀ ତିଥିରେ ଭଞ୍ଜ ଜୟନ୍ତୀ ପାଳନ କରିଥାନ୍ତି । ଅନୁମାନ କରାଯାଏ କବିଙ୍କୁ ୨୫/୨୬ ବର୍ଷ ବୟସ ହେବା ପର୍ଯ୍ୟନ୍ତ ସେ ସେହି କୁଲାଡ଼ଗଡ଼ରେ ଅବସ୍ଥାନ କରୁଥିଲେ ।୧୯୩୬ ମସିହା ଏପ୍ରିଲ୍ ପହିଲା ଦିନ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ସ୍ୱୀକୃତି ମିଳିଲା । ବହୁ ଶ୍ରମ ଓ ବହୁ ସାଧନା ପରେ ଆମେ ଯେ ଓଡ଼ିଆ, ଆମର ସ୍ୱତନ୍ତ୍ର ପ୍ରଦେଶ ଯେ ଓଡ଼ିଶା, ଏ ଗର୍ବ କରିବାକୁ ଆମକୁ ସୁଯୋଗ ମିଳିଲା । ତେବେ ମୁଖ୍ୟତଃ ଭାଷା ସୂତ୍ରରେ ପ୍ରଦେଶ ଗଠନ ହୋଇଥିଲା । ଯେଉଁ ସାଧକମାନଙ୍କର ସାଧନା ବଳରେ ଓଡ଼ିଆ ଭାଷାଭାଷୀମାନେ ବିଶ୍ୱ ଦରବାରରେ ତାଙ୍କର ନାଯ୍ୟ ଦାବୀ ପାଇଥିଲେ ସେମାନଙ୍କ ମଧ୍ୟରେ ଥିଲେ ଉପେନ୍ଦ୍ର ଭଞ୍ଜ ଅନ୍ୟତମ । ସାରଳା ଦାସ, ଜଗନ୍ନାଥ ଦାସ, ଦୀନକୃଷ୍ଣ ଦାସ, ଉପେନ୍ଦ୍ର ଭଞ୍ଜ ଅଭିମନ୍ୟୁ ସାମନ୍ତ ସିଂହାର, କବିସୂର୍ଯ୍ୟ ବଳଦେବ ରଥ, ରାଧାନାଥ ରାୟ, ଫକୀରମୋହନ ସେନାପତି, ମଧୁସୂଦନ ରାଓ, ଗଙ୍ଗାଧର ମେହେର ପ୍ରଭୃତିଙ୍କ କାବ୍ୟ କବିତାରେ ଇଂରେଜମାନେ ଚମତ୍କୃତ ହୋଇ ଯାଇଥିଲେ । ସେମାନଙ୍କ ଗାଦି ଦୋହଲି ଯାଇଥିଲା ।

ସ୍ୱାମୀ ବିବେକାନନ୍ଦଙ୍କୁ ଚିହ୍ନିବାକୁ ହେଲେ ଯେପରି ଶ୍ରୀ ଶ୍ରୀ ରାମକୃଷ୍ଣ ପରମହଂସଙ୍କ ଜୀବନୀ ପଢ଼ିବାକୁ ହେବ ଠିକ୍ ସେହିପରି ଉପେନ୍ଦ୍ର ଭଞ୍ଜଙ୍କ ଅତୀତକୁ ଜାଣିବାକୁ ହେଲେ ତାଙ୍କର ପିତାମହ ଧନଞ୍ଜୟ ଭଞ୍ଜଙ୍କ ଜୀବନୀକୁ ଅନୁଧ୍ୟାନ କରିବାକୁ ହେବ । କବି ଧନଞ୍ଜୟ ପ୍ରାୟ ୬୪/୬୫ ବର୍ଷ ଘୁମୁସରର ରାଜା ଥିଲେ । ସେ ବହୁପତ୍ନିକ ଥିଲେ । ବହୁ ପତ୍ନୀ ଗ୍ରହଣ କରିବା ହିଁ ତାଙ୍କୁ ଆକସ୍ମିକ ମୃତ୍ୟୁ ଆଡ଼କୁ ଟାଣିନେଲା । କଥିତ ଅଛି ରାଜାଙ୍କ ବାର୍ଦ୍ଧକ୍ୟ ସମୟ ଉପନୀତ ହେବାରୁ ରାଣୀମାନେ ପ୍ରତ୍ୟେକ ନିଜ ନିଜ ପୁତ୍ରକୁ ରାଜ ସିଂହାସନରେ ବସାଇବା ପାଇଁ ଷଡ଼ଯନ୍ତ୍ରରେ ଲିପ୍ତ ରହିଲେ । ଧନଞ୍ଜୟଙ୍କ ପ୍ରିୟତମା ରାଣୀ ହାରୁ ଦେଈ ବା ମଣ୍ଟା ଦେବୀ ଗୁପ୍ତ ଚକ୍ରାନ୍ତ କରି ରାଜାଙ୍କୁ ବିଷ ଦେଇ ଦେବାରୁ ସେ ମୃତ୍ୟୁବରଣ କଲେ । ଫଳରେ ଘୁମୁସର ରାଜ୍ୟରେ ଅର୍ନ୍ତବିପ୍ଳବ ମୁଣ୍ଡ ଟେକିଲା ଏବଂ ଶେଷରେ ନୀଳକଣ୍ଠ ଭଞ୍ଜ ହାରୁ ଦେଈଙ୍କ ପୁତ୍ର ରାଜ୍ୟଭାର ହାତକୁ ନେଲେ । ମାତ୍ର ଦୁଇ ବର୍ଷ ପରେ ସେ ପୁତ୍ର ଉପେନ୍ଦ୍ରଙ୍କ ସହ ସପରିବାରେ ଘୁମୁସରରୁ ବିତାଡ଼ିତ ହେଲେ । ଏହି ସମୟ ଥିଲା ଉପେନ୍ଦ୍ରଙ୍କ ପାଇଁ ଘୋର ଦୁର୍ଦ୍ଦିନର ସମୟ । ଉପେନ୍ଦ୍ର ଭଞ୍ଜଙ୍କର ବୈବାହିକ ଜୀବନ କହିଲେ କିଛି ନଥିଲା । ଦୁଇ ଦୁଇଥର ବିବାହ କରିଥିଲେ ମଧ୍ୟ ସ୍ତ୍ରୀସୁଖରୁ ସେ ବଞ୍ଚିତ ହୋଇଥିଲେ । ପ୍ରଥମେ ସେ ନୟାଗଡ଼ର ରାଜଜେମାଙ୍କୁ ବିବାହ କରିଥିଲେ । ତାଙ୍କର ଆକସ୍ମିକ ବିୟୋଗ ପରେ ସେ ଆଉ ବିବାହ କରିବେ ନାହିଁ ବୋଲି ସ୍ଥିର କରିଥିଲେ । ମାତ୍ର ପିତାମହ ଧନଞ୍ଜୟଙ୍କ ବାଧ୍ୟ ବାଧକତାରେ ପୁନର୍ବାର ବାଣପୁର ରାଜଜେମା ଲାବଣ୍ୟବତୀଙ୍କ ପାଣି ଗ୍ରହଣ କଲେ । ସେ ମଧ୍ୟ ତାଙ୍କୁ ଅକାଳରେ ଛାଡ଼ି ଚାଲିଗଲେ । କବିଙ୍କର ଏହି ଦୁଇ ପତ୍ନୀଙ୍କର ପ୍ରେମ, ପତି ପରାୟଣତା, ଆତ୍ମୀୟତା କବିଙ୍କୁ ଶେଷ ଜୀବନ ପର୍ଯ୍ୟନ୍ତ ଆଘାତ ଦେଇଥିଲା । ସେଥି ପାଇଁ କବିଙ୍କର କାବ୍ୟ କବିତାରେ ମିଳନ ଅପେକ୍ଷା ବିରହର ମାତ୍ରା ଅଧିକ ଅନୁଭୂତ ହୁଏ । ବାଣପୁର ରାଜଜେମା ଲାବଣ୍ୟବତୀଙ୍କ ଆକସ୍ମିକ ମୃତ୍ୟୁ ପରେ 'ଲାବଣ୍ୟବତୀ' କାବ୍ୟ ରଚନା କରିଥିବାର ଜଣାଯାଏ ।

ଭାରତୀୟ ପରମ୍ପରାକୁ ଲକ୍ଷ୍ୟ କଲେ ଜଣାପଡ଼େ ଆଦିକବି ବାଲ୍ମିକି ଜନ୍ମରୁ ମୂର୍ଖ ଥିଲେ । ବହୁ ଅନ୍ୟାୟ ଅତ୍ୟାଚାରରେ ଲିପ୍ତ ଥିଲେ । ନିଜ ଭୁଲ୍ ବୁଝି ପାରିବା ପରେ ରାମ ନାମ ଜପି ଜପି ଅଦ୍ଭୁତ ସାଧନାରେ ସିଦ୍ଧିଲାଭ କରି ଦସ୍ୟୁ ରତ୍ନାକରରୁ ବାଲ୍ମିକି ହୋଇ ପାରିଥିଲେ । ତାଙ୍କରି ମୁଖ ନିସୃତ ଭାଷା ହେଲା ଆଦି ଶ୍ଳୋକ । ସେ ରଚନା କଲେ ରାମାୟଣ । କାଳିଦାସ ମଧ୍ୟ ମୂର୍ଖ ଥିଲେ । ସ୍ତ୍ରୀଠାରୁ ଅପମାନିତ ହୋଇ କାଳୀ ମନ୍ତ୍ର ଜପ କରି ମହାକବି କାଳିଦାସ ହେଲେ । କବି ଜୟଦେବଙ୍କର ଆରାଧ୍ୟ ଦେବତା ରାଧା କୃଷ୍ଣ । ଜୟଦେବଙ୍କ ଭକ୍ତିରେ ତୁଷ୍ଟ ହୋଇ ସ୍ୱୟଂ ଶ୍ରୀକୃଷ୍ଣ ଜୟଦେବ ବେଶରେ ଆସି "ଗୀତ ଗୋବିନ୍ଦ"ର ଅପୂର୍ଣ୍ଣ ଶ୍ଳୋକକୁ ପୂର୍ଣ୍ଣ କରିଥିଲେ । ଲେଖି ଦେଇ ଯାଇଥିଲେ 'ଦେହି ପଦ ପଲ୍ଲବ ମୁଦାରମ୍' ସେହିପରି ଉପେନ୍ଦ୍ର ଭଞ୍ଜ ରାମତାରକ ମନ୍ତ୍ର ଜପକରି ପ୍ରସିଦ୍ଧ କବି ହୋଇଛନ୍ତି ଏହା ସେ ନିଜେ ସ୍ୱୀକାର କରିଛନ୍ତି ।

ପିତାମହ ରାଜା ଧନଞ୍ଜୟ ଭଞ୍ଜ ଥିଲେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ କବି । ତାଙ୍କୁ ଓଡ଼ିଆ ସାହିତ୍ୟ ଜଗତରେ ରୀତି ଯୁଗର ପ୍ରବର୍ତ୍ତକ

# କବି ସାର୍ବଭୌମ
# କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ

* ଶ୍ରୀ ମାଗୁଣି ଦାଶ

ଆଜକୁ ପ୍ରାୟ ତିନିଶତ ତେଇଶ ବର୍ଷ ତଳେ ୧୬୭୦ ମସିହାରେ କବି ସାର୍ବଭୌମ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଗଞ୍ଜାମ ଜିଲ୍ଲା ଘୁମୁସର ରାଜ୍ୟର ରାଜଧାନୀ କୁଳାଡ଼ଗଡ଼ରେ ପ୍ରସିଦ୍ଧ ଭଞ୍ଜ ରାଜ ବଂଶରେ ଜନ୍ମଗ୍ରହଣ କରିଥିଲେ। ଉପେନ୍ଦ୍ର ଭଞ୍ଜଙ୍କ ପୂର୍ବରୁ ସେହି ବଂଶରେ ଦେବେନ୍ଦ୍ର ଭଞ୍ଜ, ଫକୀର ଭଞ୍ଜ, ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ଧନଞ୍ଜୟ ଭଞ୍ଜ ଓ ପିତା ନୀଳକଣ୍ଠ ଭଞ୍ଜ ପ୍ରଭୃତି କବିମାନେ ଜନ୍ମଗ୍ରହଣ କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଥିଲେ। ସର୍ବୋପରି ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ଧନଞ୍ଜୟ ଭଞ୍ଜ ଜଣେ ଅପ୍ରତିଦ୍ୱନ୍ଦ୍ୱୀ କବି ଥିଲେ। ତାଙ୍କୁ ଓଡ଼ିଆ ସାହିତ୍ୟର ରୀତି ଯୁଗର ପ୍ରବର୍ତ୍ତକ ବୋଲି କୁହାଯାଏ। ତାଙ୍କ ରଚିତ ନଅଖଣ୍ଡ କାବ୍ୟ ମଧ୍ୟରୁ ଶ୍ରୀରାମ ବିଳାସ ବା ରଘୁନାଥ ବିଳାସ ଗୋଟିଏ ଶ୍ରେଷ୍ଠ କାବ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ। ଏଥିରେ ବିଭିନ୍ନ ରାଗ ରାଗିଣୀର ୪୯ଟି ଛାନ୍ଦ ସନ୍ନିବେଶିତ ହୋଇଅଛି।

କିମ୍ବଦନ୍ତୀ କୁହେ ଧନଞ୍ଜୟ ଭଞ୍ଜ ଶ୍ରୀରାମ ବିଳାସ କାବ୍ୟଟି ରଚନା କରିସାରି ଉପେନ୍ଦ୍ର ଭଞ୍ଜଙ୍କୁ କାବ୍ୟଟି ପାଠ କରିବା ପାଇଁ ଦେଇଥିଲେ। ଉପେନ୍ଦ୍ର ଭଞ୍ଜ କାବ୍ୟଟି ପାଠ କରିସାରିବା ପରେ ଧନଞ୍ଜୟ ଭଞ୍ଜ କାବ୍ୟ ସମ୍ବନ୍ଧେ ମତାମତ ପଚାରିବାରୁ ଉପେନ୍ଦ୍ର ଭଞ୍ଜ କାବ୍ୟଟିର ଲେଖା ଅତ୍ୟନ୍ତ ଉଚ୍ଚ କୋଟିର ହୋଇଛି ବୋଲି କହିବା ସଙ୍ଗେ ସଙ୍ଗେ ଆଉ ଟିକିଏ ଅଳଙ୍କାର ପ୍ରୟୋଗ କରି ଥିଲେ କାବ୍ୟଟି ଅଧିକ ସୁନ୍ଦର ହୋଇଥାନ୍ତା ବୋଲି ନିର୍ଭିକ ଭାବରେ କହିଥିଲେ। ଏଥିରେ ଧନଞ୍ଜୟ ଖୁସି ନହୋଇ ବରଂ ଉପେନ୍ଦ୍ର ଭଞ୍ଜଙ୍କୁ, "ଏହାଠାରୁ ଅଧିକ ସୁନ୍ଦର କାବ୍ୟଟିଏ ତୁମେ ଲେଖି ପାରିବ କି" ବୋଲି ପ୍ରଶ୍ନ କରିଥିଲେ। ସେତେବେଳେ ଉପେନ୍ଦ୍ର ଭଞ୍ଜ କହିଥିଲେ "ଛାମୁଙ୍କର ଆଜ୍ଞା ହେଲେ ନିଶ୍ଚୟ ଲେଖିପାରିବି", "କେତେଦିନରେ ଲେଖି ମତେ ଶୁଣାଇବ" ବୋଲି ଧନଞ୍ଜୟ ଭଞ୍ଜ ପଚାରିବାରୁ, "ବର୍ଷକ ମଧ୍ୟରେ ସେହି ରାମ ଚରିତକୁ ନେଇ କାବ୍ୟଟି ଲେଖି ଶ୍ରୀଛାମୁଙ୍କ ପାଦପଦ୍ମରେ ଭେଟି ଦେବି" ବୋଲି କହିଥିଲେ।

କଥାକୁ ସତ ଉପେନ୍ଦ୍ର ଭଞ୍ଜ ବର୍ଷକ ମଧ୍ୟରେ ବାବନ ସପ୍ତାହରେ ବାବନ ଛାନ୍ଦ ବିଶିଷ୍ଟ 'ବ' ଆଦ୍ୟ ଅକ୍ଷର ନିୟମରେ ବୈଦେହୀଶ ବିଳାସ ନାମକ ମହାକାବ୍ୟଟି ରଚନା କରିଥିଲେ। କାବ୍ୟଟି ଲେଖି ସାରିବା ପରେ ତାଳପତ୍ର ପୋଥିର ଦୁଇ ପାଖରେ ବରକୋଳି କାଠ ପଟା ଦେଇ ବାରକ୍ଷୀଅ ସୁତାରେ ବାନ୍ଧି ପିତାମହଙ୍କ ଚରଣରେ ଅର୍ପଣ କରିବା ପାଇଁ ମନସ୍ଥ କରିଥିଲେ। କିନ୍ତୁ କାବ୍ୟଟି ସମ୍ପୂର୍ଣ୍ଣ ହେବା ବେଳକୁ ପିତାମହ ଧନଞ୍ଜୟ ଭଞ୍ଜ ଏକ ଅସ୍ୱାଭାବିକ ପରିସ୍ଥିତିରେ ଇହଧାମ ତ୍ୟାଗ କରି ସାରିଥିଲେ।

ଧନଞ୍ଜୟ ଭଞ୍ଜଙ୍କ ଶ୍ରୀରାମ ବିଳାସ କାବ୍ୟର ଛାୟା ଉପେନ୍ଦ୍ର ଭଞ୍ଜଙ୍କ ମହାକାବ୍ୟ ବୈଦେହୀଶ ବିଳାସ କାବ୍ୟ ଉପରେ ପ୍ରତିଫଳିତ ହୋଇଥିବା ଦେଖିବାକୁ ମିଳେ। ଏଠାରେ ସେଥିରୁ ଗୋଟିଏ ଉଦାହରଣ ଦେଲେ ପାଠକମାନେ ସହଜରେ ଜାଣିପାରିବେ।

ମହର୍ଷି ବିଶ୍ୱାମିତ୍ର ଯଜ୍ଞ ରକ୍ଷା କରିବା ପାଇଁ ରାମ ଲକ୍ଷ୍ମଣ ଦୁଇଭାଇଙ୍କୁ ନେଇ ଅସୁରମାନଙ୍କୁ ନିଧନ କରିସାରିବା ପରେ ମିଥିଳା ନଗରୀରେ ସୀତାଙ୍କ ସ୍ୱୟମ୍ବର ଦେଖିବା ପାଇଁ ଯିବାକୁ ଇଚ୍ଛା କରି ପବିତ୍ର ଗଙ୍ଗା ନଦୀ ପାରି ହେବାବେଳେ ଯାହା ଘଟିଥିଲା କବି ଧନଞ୍ଜୟ ଭଞ୍ଜ ନିଜର ଶ୍ରୀରାମ ବିଳାସ କାବ୍ୟରେ ଲେଖିଛନ୍ତି :—

"ପଛେ ରଘୁକୁଳ ମଣି
ନାବିକକୁ କହେ ବାଣୀ
ଆଣ ତୋର ନାବ ବେଗ
ଆମ୍ଭେ ଯିବୁ ଋଷି ସଙ୍ଗ ହେ।
ଶୁଣି ଶ୍ରୀରାମ ଉତ୍ତର
ବୋଲଇ ସେହୁ ଧୀବର
ତୁମ୍ଭେ ରହ ରଘୁବୀର
ଧୋଇବି ତୋର ପୟର ହେ।
ଏ ନାବ ମୋର ଜୀବିକା
ଏ ପୁଣି ହେଲେ ନାୟିକା।
ମୁଁ ପୁଣି କରିବି କିସ
ହେବ ମୋ କୁଟୁମ୍ବ ନାଶ ହେ।
ତୋର ଏ ଚରଣ ରେଣୁ
ପାଷାଣେ ଲାଗିଲା ଯେଣୁ।
ହୋଇଲା ସେ ଦିବ୍ୟ ନାରୀ
ଗଲା ଗଉତମ ପୁରି ହେ।
ଦାରୁ ପାଷାଣ ଅନ୍ତର
ନାହିଁ ଯେଣୁ ରଘୁବୀର
ଏଣୁ ମୋହ ମନେ ଭୟେ
ହେଉଛି ଶୁଣିମା ରାମ୍ଭେ ହେ।
ଏସନ ତା ବାଣୀ ଶୁଣି
ହସିଣ ସେ ରଘୁ ମଣି
ବୋଲନ୍ତି ଧୁଅ ଚରଣ
ଯେଣେ ତୋ ହେବ କାରଣ ହେ।
ଧନ୍ୟଧନ୍ୟ ତୁ ନାବିକ
ବୋଲନ୍ତି ସେ ଦେବ ଲୋକ
ଯେଉଁ ପାଦ ପଦ୍ମ ଭାବ
ପଖାଳନେ କଲା ଭାବ ହେ।"
(ଶ୍ରୀରାମ ବିଳାସ, ଷଷ୍ଠ ଛାନ୍ଦ)

ଉପେନ୍ଦ୍ର ଭଞ୍ଜ ସେଇ କଥାକୁ ବୈଦେହୀଶ ବିଳାସରେ ଲେଖିଛନ୍ତି :—

ବିଶାରଦ ସେ ସାମନ୍ତ, ମଣ୍ଡଳରେ ଦାସ ସେବିତ
ତାକୁ ନ ଶୁଣନ୍ତେ ରଘୁନାଥ କଥିତ,
ବିଷଧର ପ୍ରାୟେକି ତୁହି,
ବେଳେ ନେତ୍ର ଢାଳି ଶୁଣ ଉଦାର ନୋହି।
ବଧିର ନୁହଇ ବୀର ବୋଇଲା ତହିଁ ଧୀବର
ଶୁଣିଲିଣି ପଥରେ ପଥର ଅବଳା,
ବାଲି ପଡ଼ି ତୋଚରଣୁ, ଆଶଙ୍କା ଉପୁଜେ ଏଣୁ
ନଉକା ନାୟୀକା ହେଲେ ବୁଡ଼ିବ ଭେଳା

ଗୋଷ୍ଠୀର ଅନ୍ୟତମ କବି ପ୍ରବର ସ୍ୱର୍ଗତ ଗୋଦାବରୀଶ ମହାପାତ୍ର କବିଙ୍କର ଭୂୟସୀ ପ୍ରଶଂସା କରିଯାଇଛନ୍ତି ।

ସେ ନନ୍ଦଧାମରେ ନାହାନ୍ତି ସତ ତାଙ୍କର କାବ୍ୟ କବିତା ଆଜି ଜନସମାଜରେ ବେଶ୍ ଆଦୃତ ହୋଇ ଲୋକ ପ୍ରିୟତା ଦିଗରେ ସଫଳତାର ଶୀର୍ଷ ସ୍ଥାନ ମଣ୍ଡନ କରିପାରିଛି । ଆଜି ଜନ ସମାଜରେ ତାଙ୍କ ସମ୍ପର୍କରେ ଗବେଷଣା ଅବ୍ୟାହତ ରହିଛି । ତାଙ୍କର ଭାଷା ଓଡ଼ିଆ ସାହିତ୍ୟକୁ ସମୃ... କରିଛି । ଓଡ଼ିଆ ସାହିତ୍ୟର ପଥ ପ୍ରଦର୍ଶକ ଭାବରେ ସେ ଚିର ଦି... ଲାଗି ଲୋକଙ୍କ ମାନସପଟରେ ଆସନ ଅଳଙ୍କୃତ କରିବେ ।

ମାଫିତ୍-ଅଶୋକ ସାହୁ,
ଅଶୋକ ନଗର,
ଭୁବନେଶ୍ୱର ।



ଭୁବନେଶ୍ୱର ଆଦିବାସୀ ପ୍ରଦର୍ଶନୀ ପଡ଼ିଆଠାରେ ଶହୀଦ୍ ଦିବସ ପାଳନ ଅବସରରେ ଶିକ୍ଷା ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଯାଦବ ମାଝୀ ଶହୀଦ୍ ଲକ୍ଷ୍ମଣ ନାୟକଙ୍କ ପ୍ରତିମୂର୍ତ୍ତିରେ ମାଲ୍ୟାର୍ପଣ କରୁଛନ୍ତି ।

ତେଣି ପରେ ସେ କବି ଗଣେଶ ବୋଲି ଜାଣ ।
ଉପେ ତେଣେ ତାଙ୍କ ନନ୍ଦନ ପ୍ରମାଣ ।
ସ୍ନେହା ପଟି ନୀଳକଣ୍ଠ ନାମେ ଖ୍ୟାତ ।
ଛିପାନରେ ମୂର୍ତ୍ତି ତାହାଙ୍କର ଜ୍ୟେଷ୍ଠ ସୁତ ସେ ।

କବି ଏଣେଷଟୀ କାବ୍ୟରେ ନିଜର ବଂଶ ପରିଚୟ ଦେବାକୁ ଯାଇ ଲେଖିଛନ୍ତି :-

ଯେ ବଂଶେ ଇଷ୍ଟ ଦୁର୍ଗା ଦେବୀ
ବରହୀ କୋଷରୁ ସମ୍ଭବି ।
ସେବୁନେ ରାଜା ଧନଞ୍ଜୟ
ସକଳ ଗୁଣର ନିଳୟ ।
ସ୍ୱମୁଷର ଅଧିପ ପଣେ
ଲୋକେ ବିଖ୍ୟାତ କବିଗୁଣେ ।
ଉଦ୍ଭବେ ତାହାଙ୍କ ତନୁଜ
ନରେଶ ନୀଳକଣ୍ଠ ଭଞ୍ଜ ।
ତାହାଙ୍କ ଜ୍ୟେଷ୍ଠ ସୁତମୁହିଁ
ଉପେନ୍ଦ୍ର ଭଞ୍ଜ ନାମ ବହି ।
ତାରକମନ୍ତ୍ର ପରସାଦେ
ମୋହର କବିପଣ ଉଦେ ।

ଉପେନ୍ଦ୍ର ଭଞ୍ଜ ଇଷ୍ଟଦେବୀ ବାଗ୍‌ଦେବୀଙ୍କ ଶରଣାପନ୍ନ ହୋଇ ଦେବୀଙ୍କଠାରୁ ସ୍ୱପ୍ନାଦେଶ ପାଇ ରାମତାରକ ମନ୍ତ୍ର ସିଦ୍ଧ କରିଥିବା କିମ୍ବଦନ୍ତୀ ଅଛି । ବଂଶର ଇଷ୍ଟଦେବୀ ଦୁର୍ଗା ହୋଇ ଥିଲେ ମଧ୍ୟ ସେ ରାମଭକ୍ତ ହୋଇଥିଲେ ଓ ନୟାଗଡ଼ ମାଳିସାହିରେ ପ୍ରତିଷ୍ଠିତ ପ୍ରଭୁ ରଘୁନାଥଙ୍କ ସେବାରେ ନିଜକୁ ଉତ୍ସର୍ଗ କରିଥିଲେ । ପତ୍ନୀ ବିୟୋଗ, ପିତାଙ୍କ ରାଜ୍ୟଭ୍ରଷ୍ଟ ତଥା ପାରିବାରିକ ଅଶାନ୍ତି ଜନିତ ମାନସିକ ଦୁଶ୍ଚିନ୍ତାରୁ ଦୂରରେ ରହିବା ପାଇଁ ସେ ବୁଗୁଡ଼ା ନିକଟ ସିଦ୍ଧ ଗୁମ୍ଫାରେ ସନ୍ନ୍ୟାସୀ ଜୀବନଯାପନ କରିଥିବାର ପ୍ରବାଦ ଅଛି । କବି ନିଳାଦ୍ରିଶ ଚୌତିଶାରେ ଲେଖିଛନ୍ତି :-

କ୍ଷୟତ ହେଲାଣି ଏପିଣ୍ଡ ଯାକ ଏ ଜନ୍ମାନ୍ତର ଦଣ୍ଡ
କ୍ଷାତି ଏ ଉପେନ୍ଦ୍ରର କ୍ଷାତକୁଳ ତବଡାକ୍ର ।
କ୍ଷେମ ଚରଣେ ହେଉ ରୁଣ୍ଡହେ, ନୀଳାଦ୍ରିଶ ।

ସେ ପରିଣତ ବୟସରେ ସଂସାର ତ୍ୟାଗ କରିଥିବା ଏଥିରୁ ସ୍ପଷ୍ଟ ସୂଚିତ ହୁଏ ।

---

ସ୍ୱାଧୀନତା ସଂଗ୍ରାମୀ,
ଭଞ୍ଜନଗର (ଗଞ୍ଜାମ) ।




ସୂଚନା ଭବନଠାରେ ଆୟୋଜିତ ରାଜ୍ୟସ୍ତରୀୟ ଶହୀଦ୍ ରଘୁ ଦିବାକରଙ୍କ ୫୩ତମ ଶହୀଦ୍ ଦିବସ ପାଳନ ଅବସରରେ ପେନ୍‌ସନ୍ ଓ ସାଧାରଣ ଅଭିଯୋଗ ମନ୍ତ୍ରୀ ଶ୍ରୀ ପ୍ରସନ୍ନ ପାଟଶାଣୀଙ୍କ ଉଦ୍‌ବୋଧନ ।

ବୁଡ଼ିଏ ମୋ ପୋଷେ କୁଟୁମ୍ବ
ବସାଇ ନଦେବି ପାଦ ନଧୋଇ ନାବ ।
ବଢ଼ାଇ ଦେଲେ ପଦ୍ମର ଭାବଗ୍ରାହୀ ରଘୁବୀର
ପଦ୍ମରେ କ୍ଷାଳିତ କରି ବସନେ ପୋଛି,
ବ୍ରହ୍ମାରେ ଧୌତ ଯେ ପଦ, ନୋହିଛି ଶିବେ ବିଷାଦ
ନପାଇ ଚରଣାମୃତ ପାନକୁ ଇଛି ।
ବିଜ୍ଞାନୀ କୈବର୍ତ୍ତ ଧୋଇଲା ।
ବିଶ୍ୱେ ପତିତପାବନ ନାମ ରହିଲା ।
(ବୈଦେହୀଶ ବିଳାସ)

ଉପେନ୍ଦ୍ର ଭଞ୍ଜ ରାଜ ଐଶ୍ୱର୍ଯ୍ୟରେ ମଣ୍ଡି ରାଜକୀୟ ପରିବେଶ ମଧ୍ୟରେ ଜୀବନ ଯାପନ କରି ଥିଲେ ଆଜି ହୁଏତ କାଳ ଗର୍ଭରେ ତାଙ୍କର ସ୍ମୃତି କାହିଁ ହଜି ଯାଇଥାନ୍ତା । ରାଜଭୋଗ ଓ ବିଳାସ ବ୍ୟସନକୁ ତୁଚ୍ଛ ଜ୍ଞାନକରି ନିର୍ମଳ ବାଣୀ ସେବା ବ୍ରତରେ ନିଜର ଜାତୀୟ ସାହିତ୍ୟକୁ ସମୃଦ୍ଧ କରି ଥିବାରୁ ଆଜି ପ୍ରାୟ ତିନିଶହ ବର୍ଷ ପରେ ମଧ୍ୟ ତାଙ୍କର ସ୍ମୃତି ଜାତିର ହୃଦୟରେ ଜାଜ୍ୱଲ୍ୟମାନ ହୋଇ ରହିଛି । ନିଜର ମାତୃଭାଷା ଓ ସାହିତ୍ୟକୁ ଐଶ୍ୱର୍ଯ୍ୟବନ୍ତ କରିବା ପାଇଁ ତାଙ୍କର ଦାନ ଅତୁଳନୀୟ । ସେ ଶ୍ରୀରାମଚନ୍ଦ୍ରଙ୍କ ପ୍ରସାଦରୁ ଓଡ଼ିଆ ସାହିତ୍ୟର ଶବ୍ଦ ସମୁଦ୍ର ପାର ହୋଇଥିବା କଥା ଉଲ୍ଲେଖ କରିଅଛନ୍ତି ।

ଦଶରଥୀ ତୁଳକ ସାର ଆଶ୍ରୟରୁ ନିରନ୍ତର
କହେ ଉପଇନ୍ଦ୍ର ଭଞ୍ଜ   ମୁଁ ଲଙ୍ଘିଛି ଶବଦ ସମୁଦ୍ର ପାର ।

ଶବଦ ସମୁଦ୍ର ପାର ହେବା ଭଳି ଆପ ବିଶ୍ୱାସ ରଖି ସେ ଓଡ଼ିଆ ଭାଷାକୁ ସୁପ୍ରତିଷ୍ଠିତ କରିଯାଇଅଛନ୍ତି । ଏତେ ଶାସ୍ତ୍ର ଅଧ୍ୟୟନ କରି ଏତେ ଜ୍ଞାନ ଆହରଣ କରି ଓଡ଼ିଆ ସାହିତ୍ୟର ଶବ୍ଦ ସମୁଦ୍ର ପାର ହୋଇ ଥିବା ସତ୍ତ୍ୱେ ସେ ନିଜକୁ ଅତ୍ୟନ୍ତ କ୍ଷୁଦ୍ର ମନେ କରୁଥିଲେ । ସେ ଲେଖିଛନ୍ତି, ରାମ ଓ ସୀତାଙ୍କ ବିଷୟ ବାଲ୍ମୀକି, ବ୍ୟାସ, ହନୁମାନ, କାଳିଦାସ, ଭୋଜରାଜ, ବଳରାମ ଦାସ ପ୍ରଭୃତି ମହା ମହା କବିମାନେ ରଚନା କରି ଥିବା ବେଳେ ମୁଁ ଆଉ ଅଧିକ କ'ଣ ଲେଖିବି ? ସେଥି ପାଇଁ ମୁଁ ସେଥିରୁ ବିରତ ହେବାକୁ ଇଚ୍ଛା କରିଥିଲି । ମାତ୍ର ପରେ ଭାବିଲି ଆକାଶରେ ଉଜ୍ଜ୍ୱଳ ତାରକା ପଙ୍କ୍ତି ଥିଲେ ମଧ୍ୟ ଜୁଳୁଜୁଳିଆ ପୋକମାନେ ସେମାନଙ୍କର ଜ୍ୟୋତି ପ୍ରକାଶ କରିଥାନ୍ତି । ଏଇ କଥା ଭାବି ମୁଁ ବୈଦେହୀଶ ବିଳାସ ମହା କାବ୍ୟ ରଚନା କରିବାକୁ ମନ ବଳାଇଲି । ହେ ସୁଜନ ବା ଜ୍ଞାନୀ ଲୋକମାନେ ସାବଧାନରେ ଏହା ଶୁଣିବା ହେଉ ।

ଶବ୍ଦର ଇନ୍ଦ୍ରଜାଲ ସୃଷ୍ଟି କରି ଉପେନ୍ଦ୍ର ଭଞ୍ଜ ତିନିଶହରୁ ଊର୍ଦ୍ଧ୍ୱ ବର୍ଷ ହେଲା ଏ ଜାତିର ସାହିତ୍ୟ ରସିକମାନଙ୍କୁ ବିମୋହିତ କରିଛନ୍ତି ସତ୍ୟ କିନ୍ତୁ ଏହାର ଅର୍ଥ ନୁହେ ଯେ ଭଞ୍ଜ ସାହିତ୍ୟ କେବେଳ ନିରର୍ଥ ଶବ୍ଦର ସମାହାର ମାତ୍ର ।

'ବ' ଆଦ୍ୟ ନିୟମରେ ବୈଦେହୀଶ ବିଳାସ ମହାକାବ୍ୟ, 'ସ' ଆଦ୍ୟ ନିୟମରେ ସୁଭଦ୍ରା ପରିଣୟ, 'କ' ଆଦ୍ୟ ପ୍ରାନ୍ତ ନିୟମରେ କଳା କଉତୁକ, ଚଉତିଶା ନିୟମରେ ଛାନ୍ଦ ଭୂଷଣ, ଅଳଙ୍କାର ମଣ୍ଡିତ କାବ୍ୟ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ତାଙ୍କ ଶବ୍ଦ ପାଣ୍ଡିତ୍ୟର ନିଦର୍ଶନ, ଲାବଣ୍ୟବତୀ, ରସିକ ହାରାବଳୀର ସରଳ ଭାବଗର୍ଭକ ପଦାବଳୀ ଚିରକାଳ ପାଇଁ ସାହିତ୍ୟ ପ୍ରେମୀମାନଙ୍କୁ ରସାସ୍ୱାଦନର ସୁଯୋଗ ଦେଉଥିବ ।

ଭାରତୀୟ ପରମ୍ପରା ଅନୁଯାୟୀ କବି ଉପେନ୍ଦ୍ର ଭଞ୍ଜ ନିଜର ଅସାମାନ୍ୟ ପ୍ରତିଭାକୁ ଇଷ୍ଟଦେବଙ୍କ କରୁଣା ବୋଲି ସ୍ୱୀକାର କରିଛନ୍ତି । ଇଷ୍ଟଦେବ ଶ୍ରୀରାମଚନ୍ଦ୍ରଙ୍କର ଅପାର କରୁଣାରୁ ଅଲୌକିକ ଗୁଣର ଅଧିକାରୀ ହେବା ଉପେନ୍ଦ୍ର ଭଞ୍ଜଙ୍କ ଜୀବନର ଏକ ବିଶିଷ୍ଟ ଅଧ୍ୟାୟ । ତାଙ୍କ କାବ୍ୟର ବହୁ ସ୍ଥାନରେ ନିଜ ଜୀବନର କେତେକ ଅଂଶ ସ୍ୱତଃ ପ୍ରକାଶିତ ହୋଇଅଛି ।

ପ୍ରଭୁ ଶ୍ରୀରାମଙ୍କ ପ୍ରତି ତାଙ୍କ ପ୍ରଗାଢ଼ ଅନୁରକ୍ତିର ନିଦର୍ଶନ ସ୍ୱରୂପ ସେ ଗାଇ ଛନ୍ତି ।-

କହେ ଉପଇନ୍ଦ୍ର ମୋ ପ୍ରଭୁ ଶ୍ରୀରାମ ବୈକୁଣ୍ଠନାଥ ସାକ୍ଷାତ ।
ଜାତ କଲେ ସୁଧା କ୍ଷୀରାର୍ଣ୍ଣବରୁ ମୋର ଗୀରାର୍ଣ୍ଣବରୁ ଏଇ ଗୀତ ।

ବୈଦେହୀଶ ବିଳାସରେ କବିଙ୍କ ଆପ ଜୀବନର ଏକ ଝଲକ ପରିଲକ୍ଷିତ ହୁଏ ।

ବୀରବର ପଦ ଉପେନ୍ଦ୍ର ମୋର ନାମ
ବାରେ ବାରେ ସେବାରେ ମନାଇଁ ସୀତାରାମ
ବିଚିତ୍ର କବିତ୍ୱ ମାର୍ଗେ ପ୍ରସରିଲା ବୁଦ୍ଧି
ବିରଚିଲି ରାମାୟଣ ଏମୋ ବଡ଼ ସିଦ୍ଧି ଯେ ।

ଘୁମୁସର ରାଜବଂଶର ଇତିହାସରୁ ଜଣାଯାଏ ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ଧନଞ୍ଜୟ ଭଞ୍ଜଙ୍କୁ ରାମ୍ଭୁଣୀ ବ୍ରାହ୍ମଣୀ ଦ୍ୱାରା ବିଷ ପ୍ରୟୋଗ କରି ହତ୍ୟାକରାଇ ଉପେନ୍ଦ୍ର ଭଞ୍ଜଙ୍କ ପିତା ନୀଳକଣ୍ଠ ଭଞ୍ଜ ନିଜର ମାତା ମଣ୍ଡାଦେବୀଙ୍କ ପ୍ରରୋଚନାରେ ରାଜସିଂହାସନ ଅଧିକାର କରିଥିଲେ । କିନ୍ତୁ ଅଳ୍ପ କାଳ ପରେ ପ୍ରଜାମେଳିରେ ରାଜ୍ୟରୁ ବିତାଡ଼ିତ ହୋଇଥିଲେ । ଉପେନ୍ଦ୍ର ଭଞ୍ଜ   ଏ ସବୁ ନିଶ୍ଚୟ ଅନୁଭବ କରିଥିବେ ।

ଉପେନ୍ଦ୍ରଙ୍କ ପ୍ରଥମା ପତ୍ନୀ ନୟାଗଡ଼ ରାଜଜେମାଙ୍କ ବିୟୋଗ ପରେ ଆଉ ଦ୍ୱିତୀୟ ଦାର ପରିଗ୍ରହ କରିବାକୁ ସେ ଅନିଚ୍ଛା ପ୍ରକାଶ କରିଥିଲେ, କିନ୍ତୁ ଉପେନ୍ଦ୍ରଙ୍କ କବି ଜୀବନରେ ସହାୟକ ହେବା ପାଇଁ ପିତାମହ ଧନଞ୍ଜୟ ଭଞ୍ଜଙ୍କ ନିର୍ଦ୍ଦେଶରେ ସେ ବାଣପୁର ଜେମାଙ୍କୁ ପାଣିଗ୍ରହଣ କରିଥିଲେ । ସେ ମଧ୍ୟ ଅକାଳରେ କବିଙ୍କୁ ଏକାକୀ ଛାଡ଼ି ଦେହ ତ୍ୟାଗ କରିଥିଲେ । ରସିକ କବି ଏହି ଗୁଣବତୀ ବିଦୁଷୀ, ପତିପରାୟଣା ପତ୍ନୀମାନଙ୍କ ବିରହରେ ଅପୂର୍ବ ବିରହ କାବ୍ୟ ରଚନା କରିଥିବା ଅସ୍ୱାଭାବିକ ନୁହେଁ । ଭଞ୍ଜୀୟ ଲେଖନୀରେ ମିଳନ ଅପେକ୍ଷା ବିରହ ବର୍ଣ୍ଣନା ଅଧିକ ହୃଦୟସ୍ପର୍ଶୀ ହୋଇପାରିଛି । ପ୍ରତ୍ୟେକ କାବ୍ୟ ତାଙ୍କ ଅନୁଭୂତିରେ ରସାଣିତ ହୋଇଅଛି ।

ଉପେନ୍ଦ୍ର ଭଞ୍ଜ ନିଜର ବଂଶ ପରିଚୟ ଦେବାକୁ ଯାଇ ବୈଦେହୀଶ ବିଳାସ କାବ୍ୟରେ ଲେଖିଛନ୍ତି :-

ବରହୀ ବଂଶେ ଉଦ୍ଭବ ନୃପ ଧନଞ୍ଜୟ ।
ବିଶିଷ୍ଟେ ଘୁମୁସର ଅଧିପ ଗୁଣାଳୟ ।

"ବୈଦେହୀଶ ବିଳାସ" "ସୁଭଦ୍ରାପରିଣୟ" ପ୍ରଭୃତି କାବ୍ୟ–କବିତା ଏ ଦେଶର ପୁରାଣ ସାହିତ୍ୟକୁ ଉପଜୀବ୍ୟ କରି ଗଢ଼ି ଉଠିଥିଲେ ଯ ତନ୍ମଧ୍ୟରେ ଯେଉଁ ସ୍ୱଶୀୟ ସ୍ୱକୀୟାପ୍ରେମର ଜୈବୀ ହୋଇଛି ତାହା ମଧ୍ୟ ତାଙ୍କୁ ଜୟଦେବଙ୍କର ଉପଯୁକ୍ତ ଉତ୍ତରୋତ୍ତର ରୂପେ ଗଢ଼ି ପାରିଛି । ଏ ପ୍ରସଙ୍ଗରେ କବି ଜୟଦେବ ଓ ଉପେନ୍ଦ୍ରଭଞ୍ଜଙ୍କ ଶୃଙ୍ଗାର ରସର ମୁକ୍ତ ବର୍ଣ୍ଣନା କ୍ରମରେ କିଭଳି ଉପେନ୍ଦ୍ରଭଞ୍ଜ ଅଶ୍ଳୀଳତାର ବହୁ ଊର୍ଦ୍ଧ୍ୱରେ ତାହା ପ୍ରତିପନ୍ନ ହୁଏ; ଉଦାହରଣ ସ୍ୱରୂପ–

"ରତି ସୁଖସାରେ ଗତିମଭିସାରେ ମଦନ ମନୋହର ବେଶମ୍,
ନ କୁରୁ ନିତମ୍ବିନୀ ଗମନ ବିଳମ୍ବନ ମନୁସରତଂ ହୃଦୟେଶମ୍ ।
ଧୀର ସମୀରେ ଯମୁନାତୀରେ ବସତି ବନେ ବନମାଳୀ,
ପୀନ ପୟୋଧର ପରିସର ମର୍ଦ୍ଦନ ଚଞ୍ଚଳ କର ଯୁଗଶାଳୀ ।

xx xx xx xx xx xx xx

କୁସୁମ ବିଶିଖ ଶରତଳ୍ପ ମନଳ୍ପ ବିଳାସ କଳା କମନୀୟମ୍,
ବ୍ରତମିବ ତବ ପରିରମ୍ଭ ସୁଖାୟ କରୋତି କୁସୁମ ଶୟନୀୟମ୍ ।

ପାଠକ ଯେତେବେଳେ ଏଭଳି କବିତାଂଶ ପାଠକରେ ସେତେବେଳେ ତା'ର ଅବଚେତନ ମନରେ ଏକପ୍ରକାର ଅନେକାନୁଭବ ଜନିତ ପ୍ରତିକ୍ରିୟା ସୃଷ୍ଟିହେବା ସ୍ୱାଭାବିକ । ଫଳରେ ପାଠକ 'ଗୀତ ଗୋବିନ୍ଦ'ର ମନମୁଗ୍ଧକର ଲଳିତ ପଦାବଳୀର ସମସ୍ତ ମାଧୁର୍ଯ୍ୟ ଓ ରସୋପଲବ୍ଧିକୁ ପଛକରି ବ୍ୟକ୍ତି କେନ୍ଦ୍ରିକ ପରିବେଶର ସ୍ୱପ୍ନ ଦେଖେ, ସେତେବେଳେ ଉପେନ୍ଦ୍ରଭଞ୍ଜଙ୍କର–

କରିଥିବ ନିବି କ୍ୱଦମ୍ବ କଦମ୍ବ କଦମ୍ବ କଦମ୍ବ ଶଯ୍ୟାରେ
ଥିବେ ଯେମି ପଦ୍ମ କୋରକ କୋରକ କୋର କରି
ତା'ର ପ୍ରକାରେ
ହୋଇବିକ, ତାକେ ନଗୁହିବ ସଧୀରେ
ଚକ୍ରେ ଚକ୍ଷୁଥିବ ସୁପର୍ଣ୍ଣ, ସୁପର୍ଣ୍ଣ ନରଖି ଅଙ୍ଗରେ

xx xx xx xx xx xx xx

ଅଥବା–

"ମନ ଉପରେ ତ ଶାଜା ପୀରତି
ସେହି ପାଳିବ ମନୁଷ୍ୟ ବରତି ।
ଦେ ଅନୁରାଗ ଦିନେ ଦିନେକ
ସୁଖ ଭାବ ହେଉ ଥାଉ ଅନେକ ।
ପ୍ରୀତି ହୋଉ ଯେବେ ଏଡ଼େ ମଧୁର
କ୍ଷୁଧା ତୃଷା ନିଦ୍ରା ହେବ ବିଧୁର ।
ସୃଷ୍ଟି ହୋଇବେ ହୋଇଲେ ଦମ୍ପତି
ଯଦ ତେବେ ମିଳେ ଇନ୍ଦ୍ର ସମ୍ପତ୍ତି ।"

ସରଳ ସାବଲୀଳ, ବର୍ଣ୍ଣନା ଆସ୍ୱାଦ ଅନୁଭବକୁ ଜୀବନ୍ତ କରେ । ଅତଏବ୍ ଏ ସବୁ ଦୃଷ୍ଟି କୋଣରୁ ବିଗ୍ଭର କଲେ ମନେହୁଏ ସେ ଜୟଦେବ ଏ ଦେଶର ଦେବ–ଦେବୀ ରୂପେ ପୂଜା ପାଉଥିବା ରାଧା–କୃଷ୍ଣଙ୍କର ନିତ୍ୟ ରାସ ମଧ୍ୟରେ ସେଇ ଅଲୌକିକ ପ୍ରେମ ବର୍ଣ୍ଣନାରେ ଶୃଙ୍ଗାର ରସକୁ ଉପଜୀବ୍ୟ ରୂପେ ଗ୍ରହଣ କରି ତନ୍ମଧ୍ୟରେ ମିଳନ ଭାବକୁ ଉଦ୍ଦୀପ୍ତ କରିଥିଲାବେଳେ କବି ସମ୍ରାଟ ଲୌକିକ ତଥା ଦାମ୍ପତ୍ୟ ପ୍ରେମ ବର୍ଣ୍ଣନାରେ ଜୀବନର ବାସ୍ତବ ଭାବସତ୍ୟକୁ ରୂପାୟିତ କରିଛନ୍ତି ଶୃଙ୍ଗାରୀକତା ମଧ୍ୟରେ ।ତାଙ୍କ ଭାଷାରେ–"ନବ ରସରେ–ସାର/ଆଦ୍ୟଲେଖି ଶୃଙ୍ଗାର" (ଲା:ବ:) କାରଣ ସେ ଅନୁଭବ କରିଥିଲେ ଶୃଙ୍ଗାର ରସ ବିନା କୌଣସି କାବ୍ୟ ରସସିକ୍ତ ହୋଇ ପାଠକର ମାନସ ପଟରେ ଅନୁରାଗ ସୃଷ୍ଟି କରିବାରେ କ୍ଷମ ନ ହୋଇ ବରଂ ନିରସ–ସ୍ୱାଦୁହୀନ ହୋଇ ବିରାଗ ସୃଷ୍ଟି କରିବ । ପୁଣି ତା'ରି ମଧ୍ୟରେ ଆଧ୍ୟାତ୍ମିକ ବଳୟକୁ ସ୍ପର୍ଶ କରିବା ହେବ ସହଜ–ସୁଗମ । ଯେହେତୁ ଶୃଙ୍ଗାର ରସହିଁ ହେଉଛି ଆଦିରସ, ଯାହା ମଧୁରତମ ଓ ଆବେଦନମୟ ଏବଂ ମନୁଷ୍ୟର ଆଦି ପ୍ରବୃତ୍ତି ଶୃଙ୍ଗାରରୁ ହିଁ ଉତ୍ପତ୍ତି (ଶୃଙ୍ଗାର ଏବ ପ୍ରଥମଃ ପରଃ ପ୍ରହ୍ଲାଦନୋରସଃ /ତନ୍ମୟଂ କାବ୍ୟମାଶ୍ରିତ୍ୟ ମାଧୁର୍ଯ୍ୟଂ ପ୍ରତିତିଷ୍ଠତି"–ଆନନ୍ଦ ବର୍ଦ୍ଧନ)

ଭଞ୍ଜୀୟ କାବ୍ୟ–କବିତାଗୁଡ଼ିକ ପ୍ରଣୟରୁ ଆରମ୍ଭ ହୋଇ ପରିଣୟରେ ପରିଣତି ଲାଭ କରିଛି ସତ କିନ୍ତୁ ଶୃଙ୍ଗାରରସ ପରିଚର୍ଯ୍ୟା ମଧ୍ୟରେ ଏମିଶୀ ଚେତନାକୁ କରିଛି ଜୀବନ୍ତ ତଥା ତୀବ୍ରତର; ଯାହାକୁ ପାଠକଲେ ପାଠକ ସହଜରେ ଉପଲବ୍ଧି କରିପାରେ । କବି ସ୍ୱୀୟ କାବ୍ୟରେ ସର୍ବଦ 'ରାମ ତାରକ ମନ୍ତ୍ର' ହିଁ ତାଙ୍କ କବିତ୍ୱର ମୂଳପିଣ୍ଡ ବୋଲି ଉଲ୍ଲେଖ କରିଥିଲେ ମଧ୍ୟ ଉତ୍କଳର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥ ତଥା ବୈଷ୍ଣବୀୟ ଉପାସନା ଭିତରେ ରାମ–କୃଷ୍ଣ ଉଭୟଙ୍କ ପ୍ରତି ଗୁରୁତ୍ୱ ଆରୋପ କରିଛନ୍ତି । "ବୈଦେହୀଶ ବିଳାସ" ଏବଂ "ଛାନ୍ଦ–ଭୂଷଣ" କବିଙ୍କର ରାମ–କୃଷ୍ଣ–ଜଗନ୍ନାଥ ମହିମା ପ୍ରଖ୍ୟାପନର ଦ୍ୟୋତକ । "ତାରକ ମନ୍ତ୍ର ପରସାଦେ/ମୋହର କବିପଣ ଉଦେ"–ଏକଥା କହିଥିଲେ ମଧ୍ୟ ହିନ୍ଦୁ ଧର୍ମର ଉପାସ୍ୟ ଶିବ–ସୂର୍ଯ୍ୟ–ଚନ୍ଦ୍ରଙ୍କ ସହିତ ବ୍ରହ୍ମା–ବିଷ୍ଣୁ–ବଳରାମ–ପରଶୁରାମ ଆଦି ଦେବ–ଦେବୀଙ୍କୁ କାବ୍ୟ ସମାପନ ପାଇଁ କାବ୍ୟର ପ୍ରଥମ ଛାନ୍ଦ ଅର୍ଥାତ୍ ମଙ୍ଗଳାଚରଣରେ ଆବାହନ କରିଛନ୍ତି । ତାଙ୍କ ମତରେ ଈଶ୍ୱର ଏକ ଓ ନିରାକାର ହେଲେ ମଧ୍ୟବିଶ୍ୱ ବ୍ରହ୍ମାଣ୍ଡରେ ଶୃଙ୍ଖଳିତ ଶାସନ ପାଇଁ ସେ ବିଭିନ୍ନ ନାମରେ 'ଧାମ'ରେ ଓ ଆକାରରେ ଭକ୍ତ–ହୃଦ–କନ୍ଦରରେ ସ୍ଥାନ ଗ୍ରହଣ କରିଥାନ୍ତି । ଏହାକୁ ସ୍ପଷ୍ଟ କରିବାକୁ ହେଲେ 'ଶ୍ରୀମଦ୍‌ଭାଗବତ୍ ଗୀତା'ର ଦଶମ ଅଧ୍ୟାୟ ହିଁ ଉଲ୍ଲେଖ ଯୋଗ୍ୟ * ଏହାର ବାସ୍ତବତାକୁ ପ୍ରତିପାଦିତ କରିବାକୁ ହେଲେ କବି ସମ୍ରାଟଙ୍କ ଆଧ୍ୟାତ୍ମିକ ଚେତନାର ବିକଚ ବିକାଶ ରୂପ ତାଙ୍କର କାବ୍ୟ ସମୂହରେ ଯେଭଳି ବର୍ଣ୍ଣିତ ହୋଇଛି ତାହା ନିମ୍ନୋକ୍ତ ଉଦାହରଣରୁ ସ୍ପଷ୍ଟ ହୁଏ–

"କୁ –ମୁଦ କୁମୁଦ ବିଧୁ ଯଶ ଉଦିତ
ଜନକ ଜନକ ତୋଷ କରେ ବିଦିତ ।
ଅନନ୍ତ ଅନନ୍ତ ଯାହା ମହିମାମାନ
ଜଗତି ଜଗତୀ ବଡ଼ ଲୀଳା ରଚନ ।" (୧ମ ଛାନ୍ଦ–ପ୍ରେମସୁଧାନିଧି)

xx xx xx xx xx xx xx

# ଭଞ୍ଜ ସାହିତ୍ୟରେ ଆଧ୍ୟାତ୍ମିକ ଅନୁରଣନ

* ହରପ୍ରିୟା ପଣ୍ଡା

ଜୟ ଜୟ ଜଗନ୍ନାଥ ଦାରୁରୂପଧାରୀ
ନୀଳଗିରୀ ଶଗିରୀଶ ବନ୍ଦନୀୟ ହରି ।
ମହାବଳ ବଳ–ଅବରଜ ଭଦ୍ରାଗଜ
ଗରୁଡ଼ାସନ ସନକ ପୂଜ୍ୟ ଚତୁର୍ଭୁଜ ।

(୧ମ ଛନ୍ଦ ରସିକ ହାରାବଳୀ)

ରୀତି ଯୁଗର ଆଦ୍ୟ ଉଦ୍‌ଗାତା, ଭଞ୍ଜ ବଂଶର କୁଳଚନ୍ଦ୍ରମା କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ଶୃଙ୍ଗାର କବି ରୂପେ ସୁବିଦିତ । ରାଜକୀୟ ଆଦବ–କାଇଦା ମଧ୍ୟରେ ପରିପାଳିତ ଭଞ୍ଜବୀରବର ପୂର୍ବସୂରୀ ତଥା ପ୍ରପିତାମହଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ବହୁ ଅମର କାବ୍ୟ କୃତି ସଂରଚନା କରିଛନ୍ତି । ଯାହା ତାଙ୍କୁ କରିଛି ଉତ୍କଳ ସାହିତ୍ୟାକାଶର ପାହାନ୍ତି ଶୁକ୍ରତାରା । ବୈଷ୍ଣବୀୟ ଭାବ ଚେତନା ତାଙ୍କ ସାହିତ୍ୟ ମଧ୍ୟରେ ଏଭଳି ଅନୁରଣିତ ହୋଇଛି ଯେଉଁଥିରେ ତାଙ୍କର ଆଧ୍ୟାତ୍ମିକ ଅନୁଚିନ୍ତା ହୋଇଛି ପ୍ରାଞ୍ଜଳ । "କଳା କଉତୁକ"ହିଁ ଏହାର ଜ୍ୱଳନ୍ତ ନିଦର୍ଶନ । ତଥାପି କେତେକ ସମାଲୋଚକ ତାଙ୍କୁ ଏ ପର୍ଯ୍ୟନ୍ତ ବି ଅଶ୍ଳୀଳତା ତଥା ମୁକ୍ତ ଯୌନ ପରିଚର୍ଯ୍ୟାର ପ୍ରଖ୍ୟାପକ ଭାବରେ ଦୋଷଯୁକ୍ତ କରିବାରେ ଲାଗିଛନ୍ତି । ମାତ୍ର କବି ଯେ ଶୃଙ୍ଗାରୀ ନେତ୍ । ଶୃଙ୍ଗାର ରସ ପରିଚର୍ଯ୍ୟା ମଧ୍ୟରେ 'ରସ'କୁ କାବ୍ୟର ପ୍ରାଣଭାବରେ ଗ୍ରହଣ କରି କାବ୍ୟଟିକୁ ମର୍ମାନୁଭବ; ହୃଦୟସଂବେଦନ ତଥା କାବ୍ୟ ମଧୁର ଅଶାନ୍ତ ଉପଭୋଗ ନିମିତ୍ତ ଗ୍ରହଣ କରିଛନ୍ତି ସେ । ସେ ଅନୁଭବ କରିଥିଲେ ଯେ ରସଘନ ମୁହୂର୍ତ୍ତ ଏବଂ କାବ୍ୟାନନ୍ଦର ପରିଣତ ଅବସ୍ଥା ଏବଂ ରସାସ୍ୱାଦନ ହିଁ କାବ୍ୟପାଠର କେନ୍ଦ୍ରବିନ୍ଦୁ । ତେଣୁ କାବ୍ୟ କଳେବର ମଧ୍ୟରେ 'ଶୃଙ୍ଗାର'ର ଅଖଣ୍ଡ ପ୍ରବାହ ଧାରାରେ କବି ଅବଗାହିତ କରାଏ ସମଗ୍ର ସୃଷ୍ଟିକୁ । ବିଶ୍ୱ ପ୍ରପଞ୍ଚର ଏହାହିଁ ତ ମୂଳାଧାର । କେତେବେଳେ ସେ ପ୍ରକୃତି–ପୁରୁଷ ତ ଆଉ କେତେବେଳେ ସେ ପ୍ରଜ୍ଞା–ପାରମିତା ଅଥବା ପୁଣି କେତେବେଳେ ସାଙ୍କେତିକ ପୂଜା ଉପାସନା ଭିତରେ ସୃଷ୍ଟି ତତ୍ତ୍ୱର ଏକ ଅଂଶ 'ଶୃଙ୍ଗାର'କୁ ରୂପାୟିତ କରିଥାଏ (ଯେପରି :–ଶିବ–ଶକ୍ତି, ଲକ୍ଷ୍ମୀ–ନାରାୟଣ, ସୀତା–ରାମ, ରାଧା–କୃଷ୍ଣ ଇତ୍ୟାଦି) । ଏ ସବୁ ଦୃଷ୍ଟିରୁ ବିଚାର କଲେ ମନେହୁଏ ଶବଦ ସାଗରକୁ ପାରି କରିଥିବା କବି ଉପେନ୍ଦ୍ରଭଞ୍ଜ ଏକ ବ୍ୟତିକ୍ରମ ମାତ୍ର । କାରଣ ତାଙ୍କ କାବ୍ୟ–ମହାକାବ୍ୟ–ଚଉପଦୀ–ଚଉତିଶା ଗୁଡିକରେ ବୀର–ବିଭତ୍ସ–ଭୟାନକ–ଅଦ୍ଭୁତ–ଶାନ୍ତରସ–'ଶୃଙ୍ଗାର'ରସ ସହିତ ସ୍ୱଚ୍ଛ–ସଲୀଳା ସ୍ରୋତସ୍ୱିନୀର ଧାରାଭଳି ଅଖଣ୍ଡ ପ୍ରବହ ମଧ୍ୟରେ ଆଧ୍ୟାତ୍ମିକ ଚିନ୍ତା–ଚେତନା ହୋଇଛି ପରିପ୍ରକାଶ । ବୈଷ୍ଣବୀୟ ଭାବଧାରାକୁ କାବ୍ୟିକ ମର୍ଯ୍ୟାଦା ପ୍ରତ୍ୟକ୍ଷ ଭାବରେ ପ୍ରଦାନ କରି ନ ଥିଲେ ମଧ୍ୟ ସାଦରେ ଅଭିବାଦନ ଜଣାଇଛନ୍ତି ପରୋକ୍ଷ ଭାବରେ, ଯାହା ତାଙ୍କର ବହୁ ପ୍ରସିଦ୍ଧିଲାଭ କରିଥିବା 'ବୈଦେହୀଶ ବିଳାସ', 'ଲାବଣ୍ୟବତୀ', 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ', 'ରସିକ ହାରାବଳୀ', 'ସୁଭଦ୍ରା ପରିଣୟ'ଭଳି କୃତି ସମୂହରୁ ପ୍ରତୀତ ହୁଏ ।

ଉତ୍କଳୀୟ ସଂସ୍କୃତିର ଏକନିଷ୍ଠ ସାଧକ କବି ଉପେନ୍ଦ୍ରଭଞ୍ଜ । ପଞ୍ଚସଖା ସାହିତ୍ୟର ନୀରସ ବର୍ଣ୍ଣନାକୁ ଯେତେବେଳେ ଲୋକମାନସ ଗ୍ରହଣ କରିବାକୁ କୁଣ୍ଠାବୋଧ କଲା ଠିକ୍ ସେତିକିବେଳେ କବିସମ୍ରାଟ କଳ୍ପନାକୁ ଆଶ୍ରୟ କରି ସାହିତ୍ୟ ଜଗତରେ ଆଣିଲେ ଏକ ବୈପ୍ଳବିକ ପରିବର୍ତ୍ତନ । ଏହାମଧ୍ୟରେ ନଥିଲା ନିଷ୍ଠୁର କ୍ଷଣ–ଭଙ୍ଗୁରତା ବରଂ ଥିଲା ଜୀବନକୁ ଉପଭୋଗ ତଥା ବର୍ଣ୍ଣିଳ କରିବାର ଉପାଦାନ । ସୃଷ୍ଟିର ଆଦି ମିଥୁନ ଭାବ ସତ୍ୟ । ଏ ପ୍ରକାର ବର୍ଣ୍ଣନାରେ କିନ୍ତୁ କୌଣସି ଅବିନତା ନାହିଁ ବରଂ ରହିଛି ଐଶୀ ଶକ୍ତିର ପ୍ରଚ୍ଛନ୍ନ ଇଙ୍ଗିତ ।

କବି ଐଶୀ ଶକ୍ତିର ଅଧିକାରୀ । ସେ ସ୍ୱୟମ୍ଭୁ । ବୁଢ଼ିଆଣୀ ଜାଲର ଅନୁଆ ଖିଅ ମଧ୍ୟରେ ବିଚାରୀ ବୁଢ଼ିଆଣୀ ଛଟି ହେଲାଭଳି କବି ତା'ର ସୃଷ୍ଟି ସର୍ଜନାର ଅନ୍ତଃସ୍ଥଳରେ ଦୁଃଖ ଯନ୍ତ୍ରଣାରେ ଛଟପିଟ ହେଲାବେଳେ ପାଠକ ପାଇଁ ଛାଡ଼ିଯାଏ କାବ୍ୟପାଠର ଅଲୌକିକ ଆନନ୍ଦ ଓ ତଜ୍ଜନିତ ରସୋପଲବ୍ଧି, ସେଇଥିପାଇଁ ତ କୁହାଯାଇଛି "କବିରେବ ପ୍ରଜାପତିଃ" ।

କବିସମ୍ରାଟ ଭଞ୍ଜଙ୍କ ପୂର୍ବରୁ ଉତ୍କଳୀୟ କାବ୍ୟ କବିତାରେ ଯେ ନବରସର ସ୍ୱରୂପ ଉନ୍ମୋଚିତ ହୋଇ ନଥିଲା ତାହା ନୁହେଁ । କିନ୍ତୁ ତାହା ସ୍ୱକୀୟ ପ୍ରୀତିତତ୍ତ୍ୱର ପ୍ରଖ୍ୟାପକ ନ ହୋଇ ବରଂ ହୋଇଥିଲା ପରକୀୟା ପ୍ରୀତିତତ୍ତ୍ୱର ପ୍ରସ୍ତରକ । ଏହା ସତ୍ୟ ନୁହେଁ ଯେ ସ୍ୱକୀୟା ପ୍ରେମର ଜୀବନ୍ତ ତଥା ବାସ୍ତବ ବର୍ଣ୍ଣନାରେ ଯେ କବି–କୁଳ–କଞ୍ଜ ଭଞ୍ଜ ବୀରବର ସାହିତ୍ୟ ଜଗତରେ ଯେ ଉତ୍କଳୀୟ ସାମାଜିକ ଜନ ଜୀବନରେ ଅଶ୍ଳୀଳତାର ପରିପ୍ରେକ୍ଷୀରେ ଏ ଜାତିକୁ ଭୁଲ ଦିଗଦର୍ଶନ ଦେଇଛନ୍ତି । ଉତ୍କଳୀୟ ସଂସ୍କୃତିର ବାର୍ତ୍ତାବହ ବହୁବନ୍ଦିତ–ବହୁ ଚର୍ଚ୍ଚିତ ପୂଜନୀୟ "ଗୀତଗୋବିନ୍ଦ" ଅବା ଗୀତ ଗୋବିନ୍ଦକାର କବି ଜୟଦେବ ଅବଶ୍ୟ ଭକ୍ତିଧାରା ପ୍ଳାବିତ କରିଛନ୍ତି । ରାଧା–କୃଷ୍ଣ ପ୍ରେମ ବର୍ଣ୍ଣନା ମଧ୍ୟରେ ଶୃଙ୍ଗାର ଶୃଙ୍ଗାର ବର୍ଣ୍ଣନାରେ ପରକୀୟା ପ୍ରୀତିର ବାର୍ତ୍ତା ପ୍ରସ୍ତର କରିଥିଲେ ମଧ୍ୟ ତାହା ତାଙ୍କୁ ଯେଭଳି ଅମରତ୍ୱ ପ୍ରଦାନ କରି ବିଶ୍ୱ ଦରବାରରେ ଆସୀନ କରିଛି ଠିକ୍ ସେହିଭଳି କବିସମ୍ରାଟ ଭଞ୍ଜଙ୍କ ବହୁ କାବ୍ୟରେ

ଦେବ୍ୟ-ପ୍ରେମର ଅଖଣ୍ଡତା ମଧ୍ୟରେ ସେ ଯେଉଁ ନିରାଟ ସତ୍ୟ ପ୍ରକାଶ କରିଛନ୍ତି ଏବଂ ଆଧ୍ୟାତ୍ମିକ ସାଧନାକୁ ପରିପୂର୍ଣ୍ଣ ରୂପ ପ୍ରଦାନ କରିବାକୁ ପ୍ରଚେଷ୍ଟା କରିଛନ୍ତି ବାସ୍ତବିକ୍ ତାହା ପ୍ରଭାବଶାଳୀ ହୋଇପାରିଛି ।

ନାୟକ - ନାୟିକାଙ୍କ ଜୀବନର ଏକମାତ୍ର ସାର୍ଥକତା ପ୍ରବୃତ୍ତିକୁ ବର୍ଣ୍ଣନା କରିବାରେ ନାହିଁ । ନାୟକ ସମସ୍ତ ଦେବ-ଦେବୀଙ୍କୁ ପୂଜାର ଭକ୍ତି ନୈବେଦ୍ୟ ଅର୍ପଣ କରି ବାସର ଗୃହ ମଧ୍ୟରେ ବିଭିନ୍ନ ଦେବ-ଦେବୀଙ୍କର ବିବିଧ ଅବସ୍ଥାର ଚିତ୍ର ଅଙ୍କନ କରିଛି; ଗୋପରମଣୀ-ବଲ୍ଲଭ ଯମୁନା କୂଳରେ ରାଧା ଗୋଡ଼ ଧରି ପ୍ରେମ-ନିବେଦନ କରୁଛନ୍ତି. ରାମଚନ୍ଦ୍ର ସୀତାଙ୍କୁ ସ୍ତୁତି କରୁଛନ୍ତି, ଦେବ-ଦେବ ମହାଦେବ ସୁଧା ବଣ୍ଟନ ବେଳେ ବିଷ୍ଣୁଙ୍କ ମୋହିନୀ ରୂପରେ ଆସ ବିସ୍ମୃତ ହୋଇ ଗୋଡ଼ାଉଛନ୍ତି; ପୁଣି କୁବେର ପର୍ବତରେ କିନ୍ନରୀ ସଙ୍ଗେ ରମଣ କରିବା, ହନୁମାନ ମାତା ଅଞ୍ଜନା ବାନରୀ ସହିତ ପବନ ମାତିବା; ବିଶ୍ୱାମିତ୍ର ଅପ୍ସରୀ ମେନକାର ସୌନ୍ଦର୍ଯ୍ୟରେ ଆପହରା ହୋଇ ତପ ଛାଡ଼ି ତାଙ୍କ ସହିତ ରମଣ କରିବା ଇତ୍ୟାଦି । ପ୍ରସଙ୍ଗତଃ ଲାବଣ୍ୟବତୀର ବାସ୍ତର ସଜ୍ଜା ବର୍ଣ୍ଣିତ ଏକତ୍ରିଂଶ ଛାନ୍ଦ ଉଲ୍ଲେଖଯୋଗ୍ୟ । ଏଭଳି ଜୀବନ୍ତ ବର୍ଣ୍ଣନା ମଧ୍ୟରୁ ଶୃଙ୍ଗାର ପରିଚର୍ଯ୍ୟାରେ ହେଉ ବା ଦାମ୍ପତ୍ୟ ପ୍ରେମର ଚିତ୍ରଣରେ ହେଉ ହିନ୍ଦୁ ବିଶ୍ୱାସରେ ସ୍ଥାନିତ ସମସ୍ତ ଦେବ—ଦେବୀ ସ୍ଥାପନା କବି ସମ୍ରାଟଙ୍କ ଆଧ୍ୟାତ୍ମିକ ଚେତନାର ଏକ ବଳିଷ୍ଠ ଦିଗ ।

ବସ୍ତୁତଃ ରୀତି ଯୁଗର ଧର୍ମୀୟ ଚେତନା ସରସ ଶୃଙ୍ଗାରିତାକୁ ଧର୍ମାନୁଶରଣ ପ୍ରେରଣା ତଥା ସାହିତ୍ୟ ସୃଷ୍ଟିର ପ୍ରେରଣା ଭାବରେ ଗ୍ରହଣ କରିଛି । କାବ୍ୟ ମଧ୍ୟରେ ଧର୍ମଧାରା—ଜାହ୍ନବୀର ପ୍ରବହମାନ ସ୍ରୋତ ସମଗ୍ର କାବ୍ୟଶ୍ରୀକୁ କରିଛି ଜୀବନ୍ତ ଆଉ ମୂର୍ତ୍ତିମନ୍ତ । ତେଣୁ ଭଞ୍ଜୀୟ କାବ୍ୟାବଳୀ ପାଠ କଲେ ମନେହୁଏ ପ୍ରତ୍ୟେକ ଗ୍ରନ୍ଥର ପ୍ରତି ଛତ୍ରେଛତ୍ରେ ଈଶ୍ୱର ଭକ୍ତିର ପ୍ରଚ୍ଛନ୍ନ ନିଦର୍ଶନ ରହିଛି । କବି ସମ୍ରାଟ ଯେ କେବଳ ଉତ୍କଳର ବାଣୀଭଣ୍ଡାରକୁ ସମୃଦ୍ଧ କରିଛନ୍ତି ନିଜ ସୃଷ୍ଟି ସମ୍ଭାରରେ ତା'ନୁହେଁ ବରଂ କଳା—କୁଶଳତାର ପରିଚର୍ଯ୍ୟା ଏବଂ ଏଶ୍ୱର୍ଯ୍ୟଶୀ ଚେତନାର ପରାକାଷ୍ଠାରେ ସାରସ୍ୱତ ସାଧନାକୁ ମୂର୍ତ୍ତିମନ୍ତ କରିଛନ୍ତି । ବିଶ୍ୱ ସାହିତ୍ୟକୁ ତାଙ୍କର ଦାନ ଅନନ୍ୟ ।

* "ଆଦିତ୍ୟାନାମହଂ ବିଷ୍ଣୁ ଜ୍ୟୋତିଷାଂ ରବିରଂଶୁମାନ୍ ମରୀଚି ମରୁତାମସ୍ମି ନକ୍ଷତ୍ରାଣାମହଂ ଶଶୀ" ଇତ୍ୟାଦି ।

* ଅଷ୍ଟଐଶ୍ୱର୍ଯ୍ୟ :-ଅଣିମା, ଲଘିମା, ପ୍ରାପ୍ତି, ପ୍ରାକାମ୍ୟ, ମହିମା, ଈଶିତ୍ୱ, ବଶିତ୍ୱ, କାମାବସାୟିତା ଇତ୍ୟାଦି ।

---

ଅଧ୍ୟାପିକା, କୁଚିଣ୍ଡା ମହାବିଦ୍ୟାଳୟ,
କୁଚିଣ୍ଡା, ସମ୍ବଲପୁର-୭୬୮୨୨୨ ।



ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଦ୍ୱାରା କେନ୍ଦ୍ରାପଡ଼ା ଜିଲ୍ଲା ଉଦ୍‌ଘାଟନ । ଉକ୍ତ ଉଦ୍‌ଘାଟନୀ ଉତ୍ସବରେ ମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ମହାନ୍ତି, ଶ୍ରୀ ବେଦ ପ୍ରକାଶ ଅଗ୍ରୱାଲ୍ ଓ ଶ୍ରୀ ବିଜୟ ମହାପାତ୍ର ମଞ୍ଚାସୀନ ଅଛନ୍ତି ।

"ଜସ୍ତ ତସ୍ୟ ଜସ୍ୱରାମ ଜର୍ନକ ମୁଖାଦ
ଭୀମ ହରଣ ଦାନରେ ସଦା ବିଶାରଦ ହେ ।"

(ଲା: ବ: ୨ମ ଛାନ୍ଦ)

xx xx xx xx xx xx xx

"ଅନନ୍ତ ଭୁବନ ଭୂପଧନ୍ଯୁଗ୍ମ ସ୍ୱହୃଦ ଭବତାପନାଶୀ
ଶ୍ରୀ ନିଳମ୍ ଦ୍ୱିଜରାଜ ବଂଦନୀୟ (ଜନକ) ମୁଖକୁ ପ୍ରକାଶି
ସୁମରି, ମନେ ଯେ ରାମଚନ୍ଦ୍ର ଶିବ
କହେ ଉପେନ୍ଦ୍ର ଭଞ୍ଜ ବୀରବର ଯୁବାଜନ କର୍ଣ୍ଣଉତ୍ସବ ।"

(ଛା:୧—ଲା: ବ:)

ପୁଣ୍ୟ ନୀଳାଚଳଧାମ ଶଙ୍ଖକ୍ଷେତ୍ର ଯେଉଁଠି ଶ୍ରୀପୁରୁଷୋତ୍ତମ ଅର୍ଥାତ୍ ସ୍ୱୟଂ ନାରାୟଣ ବଡ଼ ଠାକୁର ଭାବରେ ପ୍ରତିଷ୍ଠିତ; ଯାହାର ଦାଣ୍ଡ ବଡ଼ଦାଣ୍ଡ; ଧୂଳି ଶରଧା ବାଲି ନାମରେ ନାମିତ; ଅନନ୍ତ ସାଗର ମହୋଦଧି ଆଉ ପ୍ରସାଦ ହେଉଛି ମହାପ୍ରସାଦ— ଏ ସବୁର ମୂକସାକ୍ଷୀ ଯେହି ଭୁଷଣ୍ଡକାକ; ଯିଏ ଦିନେ ରୋହିଣୀ କୁଣ୍ଡରେ ପଡ଼ି ଚତୁର୍ଭୁଜ ହୋଇଥିଲା; ଯେ କ୍ଷେତ୍ରରେ ପାଦ ଦେଲେ ସାମୀପ୍ୟ, ସାଲୋକ୍ୟ, ସାଯୁଜ୍ୟ ଓ ସାରୂପ୍ୟ ଏ ଚାରି ପ୍ରକାର ମୁକ୍ତିମିଳେ ।ଶ୍ରୀ ଜଗନ୍ନାଥଙ୍କ ସହିତ ଶ୍ରୀକ୍ଷେତ୍ରର ମହିମା କବି ଉପେନ୍ଦ୍ରଭଞ୍ଜ ନିଜ କାବ୍ୟ–କବିତା ସମୂହରେ ଯେଉଁଳି ଜୀବନ୍ତ ବର୍ଣ୍ଣନା କରିଛନ୍ତି ତାହା ନିମ୍ନୋକ୍ତ କବିତାଂଶରୁ ସୂଚିତ ହୁଏ—

"ସିନ୍ଧୁ ତଟେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରାଜ
ସାଧୁଜନେ ! ଅଛି ତହିଁ ଅଦ୍ଭୁତ ଆଶ୍ଚର୍ଯ୍ୟ ହେ
ଯେ ଭୂମି ପ୍ରବେଶେ ବ୍ରହ୍ମ ହତ୍ୟା ପାପ ହରେ
ସାକ୍ଷାତ ହୋଇଛି ଏ କପାଳ ମୋଚନରେ ଯେ ।
ଯେ ହୁଏ ଚତୁର୍ଭୁଜ ଯେ ଯେ କ୍ଷେତ୍ରେ ରହି
ସାକ୍ଷୀ ଏ କଥାକୁଟି ଅଜ୍ଞାନ କାକ ତହିଁ ଯେ ।

(୧ମ ଛା: ସୁ: ପ:)

ପୁଣି 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଦେଖୁ—

ଶୁଣ କୋବିଦେ ଭରତ ଖଣ୍ଡେ ପୁଣ୍ୟଧାମ,
ଯେଣୁ ନାରାୟଣ ଦେହୀ ତେଣୁ ସେହି ନାମ ହେ ।
ଗୀର୍ବାଣେ ମତେ ନିର୍ବାଣ ସାରୂପ୍ୟକୁ ଦେଇ,
ସାକ୍ଷୀ ପକ୍ଷୀ କରଟ ପ୍ରତିମାରୂପେ ଥାଇ ଯେ ।
ଯେ ବ୍ରହ୍ମହତ୍ୟା–ପାତକ–ନିପାତକ ମହୀ,
କପାଳ ମୋଚନ ତିଲୋଚନ ସାକ୍ଷୀ ଯହିଁ ଯେ ।
XX XX XX XX XX XX XX
ସେ ପୁରୀ–ପରିଖା ତୀର୍ଥ ରାଜ ଗର୍ଜନରେ,
କହେ ଅବଗାହେ ପାପ ବ୍ୟୂହ ଦହନରେ ହେ ।
ଦହି ସବୁ ବାଡ଼ବରେ ଦେବ ଏ ପକାଇ,
ଏ ଦର ବଳରୁ ଦୂର ଦୁରିତ ପକାଇ ହେ ।"

ପୁନଶ୍ଚ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ କବିଶେଖର ଭଞ୍ଜ ଯେଉଁଳି ଜଗନ୍ନାଥ ଏବଂ କୃଷ୍ଣଙ୍କର ଅଭେଦତ୍ୱ ପରିକଳ୍ପନା କରି ତାଙ୍କୁ 'ଧର୍ମ–ଅର୍ଥ–କାମ–ମୋକ୍ଷ' ଏ ଚତୁର୍ବର୍ଗର କାର୍ଯ୍ୟକାରଣ ତଥା ଅଷ୍ଟ ଐଶ୍ୱର୍ଯ୍ୟଂର ମୂଳ ମହାଦେବୀ କାତ୍ୟାୟନୀଙ୍କର ଚମତ୍କାର ଭାବରେ ଯେଉଁଳି ବର୍ଣ୍ଣନା କରିଛନ୍ତି ତାହା ସମଗ୍ରରୀତି ସାହିତ୍ୟରେ ଅନନ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଗୌଡ଼ୀୟ ବୈଷ୍ଣବମାନଙ୍କ ମତରେ 'ଜଗତ' ଶବ୍ଦର ଅର୍ଥ 'ରାଧା' ଏବଂ 'ନାଥ' ଶବ୍ଦର ଅର୍ଥ 'କୃଷ୍ଣ'; ଅର୍ଥାତ୍ କମ୍ବୁ କଟକରେ ଯେଉଁ ମହାନ ପୁରୁଷ ଅବସ୍ଥାନ କରିଛନ୍ତି ତାହାଙ୍କର ମହିମା ଅସୀମ ଅବର୍ଣ୍ଣନୀୟ। ତାଙ୍କ ପଦସେଣ ସ୍ୱୟଂ ମହାଦେବ ଆଶା କରିଛନ୍ତି। ସେହି ଅଣାକାର ପରଂବ୍ରହ୍ମଙ୍କୁ ସ୍ମରଣ କରି କବି ଲେଖନୀ ଚାଳେଇ ଚଳିଲ—

"ଯାହା କଟାକ୍ଷ—କୁଠାର ପତନ ମାତରେ
ଅନେକ ଦୁଃଖ—ଅନ ବୋହକୁ ଛେଦି ପାରେ ହେ ।
ସେହି ପାଦ—ପଦ୍ମାସନୀ ପାଟ ମହାଦେବୀ
ଅଷ୍ଟ ଐଶ୍ୱର୍ଯ୍ୟ—ଦାୟିନୀ ଅଷ୍ଟଶକ୍ତି ସେବିହେ ।।

(୧ମ ଛା: କୋ:ବ୍ର:ସୁ:)

ଆଧ୍ୟାତ୍ମିକ ଚେତନାରେ ଉଦ୍‌ବୁଦ୍ଧ କବି ଚୂଡ଼ାମଣି ଉପେନ୍ଦ୍ର ଭଞ୍ଜ ଜଗନ୍ନାଥ – ରାମ – କୃଷ୍ଣଙ୍କ ସହିତ ବିଷ୍ଣୁ – ସୂର୍ଯ୍ୟଙ୍କ ପ୍ରତୀକ କାବ୍ୟର ମଙ୍ଗଳାଚରଣରେ ବହୁବିଧ ଅର୍ଥ ସ୍ତୁତି କରି ମହାକାବ୍ୟ "ବୈଦେହୀଶ ବିଳାସ" ସୃଷ୍ଟି କରିବାରେ ସମର୍ଥ ହୋଇଛନ୍ତି । :
ବନ୍ଦଇ ଦୀନ ବାନ୍ଧବ ହରି ଯେ ତମ ଚଣ୍ଡ ଖଣ୍ଡନକାରୀ
ସଦା କମଳାନନ୍ଦ ବିସ୍ତାରୀ ସ୍ୱଭାବେ ଇନ ଯେ
ବିଭୁ ଅନନ୍ତ ଅଙ୍କ ବିହାରୀ କର ପ୍ରତାପ ଯାର ସଞ୍ଚରି ।
ନିଶାଚରଙ୍କ ଉଲ୍ଲାସ ହରି ପ୍ରଜେ ସୁମନ ଯେ
ବଇନତେୟ ଯାହା ଅଗ୍ରତେ ସ୍ଥିତ ଯେ
ବଇକୁଣ୍ଠ–ପଙ୍କଜ–ଲୋକ ତୋଷିତ ଯେ ।"

(୧ମ ଛା: ବୈ:ବି:)

କବି ପୁଣି ଉକ୍ତ ଗ୍ରନ୍ଥରେ ଅନ୍ୟତ୍ର ତାଙ୍କ ଈଶ୍ୱର ଅନୁରକ୍ତିର ତଥା ଆଧ୍ୟାତ୍ମିକ ଚେତନାର ସ୍ୱରୂପକୁ ପ୍ରକାଶ କରିଛନ୍ତି –

"ବିଭୁ ଖଗପର ମେଳ ସାଧବି
ବିହ–ଶାଳ ମେଘ ତନୁ ଭା–ରବି
ବୀର ଭାନୁତ କସ୍ୱ ଭୂ ପ୍ରସବି
ବୀଣ ପ୍ରଭୁ ସ୍ୱତରେ କବି ଭାବି ।"

ପଂକ୍ତିମାନଙ୍କରେ ଜଣେ "ସାଧକ"ର ଗୌରବ ପ୍ରତିଷ୍ଠିତ ହୋଇଛି ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ବହୁ ପ୍ରସିଦ୍ଧି ଲାଭ କରିଥିବା କାଞ୍ଚନିକ କାବ୍ୟ "ଲାବଣ୍ୟବତୀ"ଠାରୁ "କଳାକଉତୁକ" ପର୍ଯ୍ୟନ୍ତ କୃତି ସମୂହକୁ ପର୍ଯ୍ୟାଲୋଚନା କଲେ ଏଉଁଳି ଅନେକ ପ୍ରମାଣ ପାଠକର ଦୃଷ୍ଟିଗୋଚର ହୁଏ । ତେବେ ତାଙ୍କର ଭକ୍ତି ଅଭିଳାଷ ତଥା ଆଧ୍ୟାତ୍ମିକ ଅନୁଚିନ୍ତାର ଅନୁଶୀଳନରେ ଏତିକି କୁହା ଯାଇପାରେ ଯେ କବି ବୀରବର ଉପେନ୍ଦ୍ର ଭଞ୍ଜ ଅଶ୍ଳୀଳତାର ପୋଷକ ନୁହନ୍ତି କି ତାଙ୍କ କାବ୍ୟ–କବିତା ସମୂହ ଅଶ୍ଳୀଳ ଦୋଷଯୁକ୍ତ ନୁହେଁ । ବରଂ ସେ କବି ଜୟଦେବଙ୍କ ଭଳି ଜଣେ "ପ୍ରତିଭା–ଭୂଧର" ସ୍ରଷ୍ଟା । କାରଣ ସାମାଜିକ ଚଳଣି ଭିତରେ

...ପ୍ରଥମ ବ୍ରିଟିଶ ବିରୋଧୀ ସଂଗ୍ରାମ ସିପାହୀ ବିଦ୍ରୋହ ... ବୋଲି ଇତିହାସ ଗ୍ରହଣ କରିଥିଲେ ମଧ୍ୟ ଏହାର ଏକଶତ ... ପୂର୍ବେ ଘୁମୁସରରେ ଇଂରେଜ ବିରୋଧୀ ମେଳି ...ଥିଲା। ଘୁମୁସରର ୬୪ତମ ରାଜା କୃଷ୍ଣ ଭଞ୍ଜ (...–୧୭୬୩) ପ୍ରଥମେ ବ୍ରିଟିଶମାନଙ୍କ ବିରୁଦ୍ଧରେ ସଂଗ୍ରାମ ...ଥିଲେ। ପରବର୍ତ୍ତୀ କାଳରେ ଭଞ୍ଜ ରାଜାମାନଙ୍କ ପ୍ରେରଣାରେ ...ର ଦୋରା ବିଶୋୟୀ, ଦୋହରା ବିଶୋୟୀ ବ୍ରିଟିଶ ...ରେ ଅଭୂତପୂର୍ବ ସଂଗ୍ରାମ ଚଳାଇଥିଲେ। ଭଞ୍ଜବଂଶର ...ମା ଏପରି ଥିଲା ଯେ ଏକଦା ପୁରୀ ଗଜପତି ରାଜା ରାମଚନ୍ଦ୍ର ...ବ ଦ୍ୱିତୀୟ ବିପଦର ସମ୍ମୁଖୀନ ହୋଇ ଘୁମୁସର ରାଜା ଘନଭଞ୍ଜ (୧୬୧୯–୧୭୫୦)ଙ୍କ ଆଶ୍ରୟପ୍ରାର୍ଥୀ ହୋଇଥିଲେ। ଏହି ସ୍ମାରକୀ ...ପ ଗଜପତି ଘନଭଞ୍ଜଙ୍କୁ "କ୍ଷତ୍ରୀୟ ବୀର" ଉପାଧି ଦେଇଥିଲେ ଓ ଏହି ସ୍ମାରକୀ ସ୍ୱରୂପ କ୍ଷତ୍ରୀୟ ବର ପୁର ଶାସନ (ଭଞ୍ଜନଗର ...ଶା ମଧ୍ୟରେ ଅବସ୍ଥିତ) ଦାନ କରାଯାଇଥିଲା। ଗଞ୍ଜାମ ତଥା ...ଶା ଇତିହାସରେ ଘୁମୁସରର ପରିଚିତ କବିତ୍ୱ ପାଇଁ ଯେଉଁଳି ...ନ ବୀରତ୍ୱ ପାଇଁ ମଧ୍ୟ ସେଉଳି ଗୌରବାବହ। ଘୁମୁସରରେ ...ବାର ବ୍ରିଟିଶ ଓ ଫରାସୀ ସୈନ୍ୟମାନେ ଯୁଦ୍ଧ ଘଟାଇଛନ୍ତି। ...ଞ୍ଜ ରାଜବଂଶ ରାଜାମାନେ ମୂଳତଃ ସମର ପ୍ରିୟ ଥିଲେ। ...ସରେ ରାଜା କୃଷ୍ଣ ଭଞ୍ଜ (୧୭୬୫)ଙ୍କ ଠାରୁ ବ୍ରଜ ଭଞ୍ଜ (...୭୩) ପର୍ଯ୍ୟନ୍ତ ଦୀର୍ଘ ଶତାଧିକ ବର୍ଷକାଳ ଘୁମୁସରରେ ...ବାହିକ ଯୁଦ୍ଧ ସଂଘଟିତ ହୋଇଥିଲା। ଏଭଳି ଧାରାବାହିକ ...ଦ୍ଧ କାହାଣୀ ସମଗ୍ର ଭାରତ ଇତିହାସରେ ବିରଳ। ଭଞ୍ଜ ...ଜାମାନେ ଯେ ଯୋଦ୍ଧାଥିଲେ ଏ କଥା ନୁହଁ। ଭଞ୍ଜ ରାଜାମାନେ ...ବ୍ର ପରମ୍ପରାରେ ଉଭୟ ରାଜା ଓ କବି ମଧ୍ୟ।

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ବ୍ୟତୀତ ଏହି ରାଜବଂଶରେ ବହୁ ...ି ଜନ୍ମ ଗ୍ରହଣ କରିଥିଲେ। ଓଡ଼ିଆ ସାହିତ୍ୟର ପ୍ରଥମ କବି ...ଦେହ ଭଞ୍ଜ (୧୦୭୬–୧୦୫୭) "ଇଚ୍ଛାବତୀ" ନାମକ କାବ୍ୟ ରଚନା କରିଥିଲେ। ସେହିପରି ଗୋପାଳ ଭଞ୍ଜ (୧୫୮୯–୧୬୦୧) ପଞ୍ଚଶାୟକ ଧନଞ୍ଜୟ ଭଞ୍ଜ (୧୬୦୧) ରଘୁନାଥ ବିଳାସ, ମଦନ ମଞ୍ଜରୀ, ପ୍ରଭୃତି ୯ ଗୋଟି କାବ୍ୟ ରଚନା କରିଥିଲେ। ବନ୍ଧଧର ଭଞ୍ଜ "ରହମାଳା କାବ୍ୟ" ନୀଳକଣ୍ଠ ଭଞ୍ଜ "ଚୌପଦୀ ଚନ୍ଦ୍ରୋଦୟ" ଘନଭଞ୍ଜ (୧୭୦୧–୧୭୫୦) ରସନିଧି, ତ୍ରୈଲୋକ୍ୟ ମୋହିନୀ, ତ୍ରୀବିକ୍ରମ ଭଞ୍ଜ (୧୭୩୩–୧୭୮୨) କନକଲତା, ଶ୍ରୀକର ଭଞ୍ଜ (୧୭୯୦–୧୭୯୯) ଅର୍ଥପଞ୍ଚକ, ଅଷ୍ଟାକ୍ଷର ନାମ, ମନ୍ତାର୍ଥଗୀତା, ପ୍ରଭୃତି ରଚନା କରିଥିଲେ। ସେଭଳି ଫକୀର ଭଞ୍ଜ, ଗୋବିନ୍ଦ ଭଞ୍ଜ, ରଘୁନାଥ ଭଞ୍ଜ, ଦେଓ ଭଞ୍ଜ, ପଦ୍ମନାଭ ଭଞ୍ଜ ପ୍ରଭୃତି ରାଜାମାନେ ବିଭିନ୍ନ କାବ୍ୟ ରଚନା କରି ଯାଇଛନ୍ତି। ଦୀର୍ଘ ଏକ ହଜାରରୁ ଅଧିକ ବର୍ଷ କାଳ ଧାରାବାହିକ ରାଜ୍ୟ ଶାସନ ସହ ପାରମ୍ପରିକ ରୀତିରେ ସମର ପ୍ରିୟତା ଓ କବିତ୍ୱ ପାଇଁ ଘୁମୁସର ଭଞ୍ଜ ବଂଶର ପରିଚୟ ଅତ୍ୟନ୍ତ ଗୌରବୋଜ୍ଜ୍ୱଳ।

ଇତିହାସ ଅନୁଧ୍ୟାନ କ୍ରମେ ଭଞ୍ଜମାନେ ବୌଦ୍ଧରୁ ଆସିବାବେଳେ ଗୁମାସର ରାଜ୍ୟ ପ୍ରତିଷ୍ଠା କଲେ। ଦ୍ୱାଦଶ ଶତାବ୍ଦୀ ବେଳେ ଏହା କୁଲାଡ଼ ନାମରେ ପରିଚିତ ହେଲା। ଏବଂ ଡିସେମ୍ବର ୧୧ ତାରିଖରେ ଜର୍ଜ ରସେଲ ମାଡ୍ରାସ ରେଭିନ୍ୟୁ ବୋର୍ଡ ଅଫିସର ଘୁମୁସରରେ ସେସାଲ କମିଶନର ରୂପେ ଯୋଗ ଦେଲେ। ପରବର୍ତ୍ତୀ କାଳରେ ଏହି ଅଞ୍ଚଳ ରସେଲ (GEORGE RUSSELL)ଙ୍କ ନାମରେ ରସଲକୋଣ୍ଡା ବୋଲି ହେଲା। ୧୯୪୫ ମସିହାରେ ଭଞ୍ଜ ସାହିତ୍ୟ ପରିଷଦ ରସଲକୋଣ୍ଡା ନାମ ପରିବର୍ତ୍ତନ ପାଇଁ ଦାବୀ କରିଥିଲେ। ୧୯୫୩ ମସିହାରେ ଏହା ଭଞ୍ଜନଗର ନାମରେ ଘୋଷଣା କଲେ।

ଆଡ଼ଭୋକେଟ୍,
ବ୍ରହ୍ମପୁର, ଗଞ୍ଜାମ।



ଭୁବନେଶ୍ୱର ବ୍ଲକର ନୂଆବନ୍ତଠାରେ ନୂତନ ଭାବେ ନିର୍ମାଣ କରାଯାଇଥବା ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି।

# ଘୁମୁସରର ଭଞ୍ଜ ବଂଶ

*** ଅନନ୍ତ ରାମ କର କୌଣ୍ଡିନ୍ୟ**

ବର୍ତ୍ତମାନ ଯେଉଁ ଅଞ୍ଚଳ ଭଞ୍ଜନଗର ରୂପେ ପରିଚିତ ଅତୀତରେ ଏହା ଘୁମୁସର ରୂପେ ପରିଚିତ ଥିଲା । ଗଞ୍ଜାମ ଓ ଫୁଲବାଣୀ ଜିଲ୍ଲାର ବୌଦ ଭଞ୍ଜନଗର ଆସିକା ଓ ହିଞ୍ଜିଳି ପ୍ରଭୃତି ଅଞ୍ଚଳରେ ଏକଦା ଭଞ୍ଜ ରାଜାମାନେ ଶାସନ କରୁଥିଲେ । ଇତିହାସ ବର୍ଣ୍ଣନା ପ୍ରକାରେ ଭଞ୍ଜ ରାଜାମାନେ ମୟୁରଭଞ୍ଜ ଅଞ୍ଚଳରୁ ଆସି ପ୍ରଥମେ ବୌଦରେ ରାଜ୍ୟ ସ୍ଥାପନ କରି ପରେ ହିଞ୍ଜିଳି ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ । କିମ୍ବଦନ୍ତୀ ପ୍ରକାରେ ଦିନେ ବଶିଷ୍ଠ ମହର୍ଷି ବନରେ ବିଚରଣ କରୁ କରୁ କାମାସକ୍ତ ହୋଇଥିଲେ । ଏହା ଫଳରେ ମୁନିଙ୍କ ରେତ ସ୍ଖଳିତ ହେଲା । ମୁନି ନିଜର କୌପିନୀ ନିକଟସ୍ଥ ପୁଷ୍କର ତୀର୍ଥରେ ଧୌତ କରନ୍ତେ ରେତ ବିନ୍ଦୁ ଆକାର ଧାରଣ କରି ଜଳରେ ଭାସିଲା । ଏପରି ଅବସ୍ଥାରେ ଏକ ତୃଷାର୍ତ୍ତ ମୟୁରୀ ସେହି ସ୍ଥାନରେ ଜଳପାନ କରୁ କରୁ ରେତ ମୟୁରୀ ଗର୍ଭକୁ ଯାଇ ମୟୁରୀ ଗର୍ଭବତୀ ହେଲା । ମୟୁରୀ ଦୁଇଟି ଅଣ୍ଡା ପ୍ରସବ କଲା । ଅଣ୍ଡା ଦ୍ୱୟ କ୍ରମେ ବୃଦ୍ଧିଲାଭ କରନ୍ତେ ମୟୁରୀ ତାହା ପରିତ୍ୟାଗ କରି ଚାଲିଗଲା । ଏ ସମସ୍ତ ବିଷୟ ମୁନି ଜାଣିପାରି ଅଣ୍ଡାଦ୍ୱୟକୁ ଆଶ୍ରମକୁ ଆଣି ପାଳନ କଲେ । କିଛି ଦିନ ଅନ୍ତେ ଗୋଟିଏ ଅଣ୍ଡାରୁ ଏକ ସୁନ୍ଦର ବାଳକ ଜନ୍ମ ଗ୍ରହଣ କଲା । ଏହି ଅଣ୍ଡଜ ସନ୍ତାନକୁ ମହର୍ଷି ମଦନବାଣ ବୋଲି ନାମ ଦେଲେ । ଅନ୍ୟ ଅଣ୍ଡାଟିରୁ କିଛି ଜାତ ନ ହେବାରୁ ମହର୍ଷି ଏକ ଦଣ୍ଡ ଦ୍ୱାରା ଭଗ୍ନ କରିବାକୁ ଲାଗିଲେ । ଅଣ୍ଡାଟି ଭାଙ୍ଗି ବାଳକ ଜାତ ହୋଇଥିବାରୁ ମହର୍ଷି ବାଳକକୁ ମୋଦକ ଭଞ୍ଜ ନାମ ଦେଲେ । ଏହି ଦୁଇ କୁମରଙ୍କ ନାମ ଅନୁସାରେ ବାଣ ଓ ଭଞ୍ଜ ନାମକ ଦୁଇଟି କ୍ଷତ୍ରୀୟ ବଂଶ ସମ୍ଭବ ହେଲା । କିଛି କାଳ ପରେ କନିଷ୍ଠ କୁମର ମୋଦକଭଞ୍ଜ ସୁବର୍ଣ୍ଣରେଖା ନଦୀ ତୀରସ୍ଥ ସୁବିଶାଳ ଅଞ୍ଚଳର ଅଧିପତି ହେଲେ । କ୍ରମେ ଏହା "ଭଞ୍ଜ ଭୂମି" (ମୟୁର ଭଞ୍ଜ) ନାମରେ ପରିଚିତ ହେଲା । କ୍ରମେ ଭଞ୍ଜ ଭୂମି ଦୁଇଭାଗ ହୋଇ କେନ୍ଦୁଝର ସୃଷ୍ଟି ହେଲା । ସମସ୍ତ କ୍ରମେ ଭଞ୍ଜ ବଂଶର ବିସ୍ତୃତି ମୟୁର ଭଞ୍ଜ, କେନ୍ଦୁଝର, ଅନୁଗୁଳ, ବୌଦ, ଦଶପଲ୍ଲା, ସୋନପୁର ଓ ଗଞ୍ଜାମ ଘୁମୁସର ଆସିକା ପର୍ଯ୍ୟନ୍ତ ବ୍ୟାପିଲା । ମୟୁର ଭଞ୍ଜ, କେନ୍ଦୁଝର, ଖିଚିଙ୍ଗ ଭଞ୍ଜ ବଂଶର ପ୍ରଥମ ରାଜଧାନୀ ଥିଲା । ପୂର୍ବେ ଏହା "ଖିଚିଙ୍ଗ" ଖିଞ୍ଜିଲି ପ୍ରଭୃତି ନାମରେ ଥିଲା । ଭଞ୍ଜମାନେ ଯେବେ ଗଞ୍ଜାମ ଆସିଲେ ଘୁମୁସର ଅଞ୍ଚଳକୁ ଖିଞ୍ଜିଲି ନାମ ଦେଇଥିଲେ । ଯାହାର ସ୍ୱରୂପ ଆଜିମଧ୍ୟ ହିଞ୍ଜିଳି ବୋଲି ଗ୍ରାମ ଅଛି । ଭଞ୍ଜ ବଂଶର ଏକ ଶାଖା ବୌଦରେ ପ୍ରତିଷ୍ଠାଲାଭ କଲେ । ପ୍ରଜ ଭଞ୍ଜ ବନମାଳୀ ଭଞ୍ଜ ଏବଂ ତାଙ୍କ ଅନୁଜ ରଘୁନାଥ ଭଞ୍ଜ ଘୁମୁସର ଭଞ୍ଜ ବଂଶର ପ୍ରତିଷ୍ଠାତା । ଘୁମୁସର ପ୍ରତିଷ୍ଠା କାଳକୁ ୭୦୦ ଶତାବ୍ଦ ବୋଲି ଧରାଯାଏ । ରାଜ୍ୟ ପ୍ରତିଷ୍ଠା କାଳରେ ଦୁର୍ଗ ସ୍ଥାପନ ପାଇଁ ଉଚ୍ଚ ଭୂମି ଓ ଜଳାଶୟ ସନ୍ଧାନକରି ତତ୍ ସନ୍ନିହିତ ସ୍ଥାନରେ ରାଜ୍ୟ ସ୍ଥାପନ କରାଗଲା । ଉଚ୍ଚ ଭୂମି ଅର୍ଥ ଗୁମ୍ଫା ଏବଂ ଜଳାଶୟ ଅର୍ଥ ସର ଏହି ଗୁମ୍ଫାସର ଶବ୍ଦ କ୍ରମେ ଘୁମୁସର ହେଲା । ସେହିକାଳଠାରୁ ଘୁମୁସର ଭଞ୍ଜ ବଂଶର ୨୧ ଜଣ ରାଜା ୩୬୮ ବର୍ଷ ରାଜତ୍ୱ କରିବାପରେ ୧୧୯୦ରେ ପ୍ରତାପ ଭଞ୍ଜ ନାମକ ଜଣେ ରାଜା ଶାସନ କଲେ । ପ୍ରତାପ ଭଞ୍ଜ କୁଲା ଓର୍ଦ୍ଦହ ନାମକ ବନ୍ଧ ସର୍ପକୁ ବଳୀ ଦେଇ କୁଲାଡ଼ହ ନାମକ ସ୍ଥାନ ନାମ ସୃଷ୍ଟି କଲେ । ଏ ରାଜା ୧୩ବର୍ଷ ରାଜତ୍ୱ କଲେ । ଏହାଙ୍କ ଅନ୍ତେ ଦଣ୍ଡଧର ଭଞ୍ଜ ୧୦ ବର୍ଷ, ହରିଶରଣ ଭଞ୍ଜ ୧୩ ବର୍ଷ, କପିଳ ଭଞ୍ଜ ୨୬ ବର୍ଷ, ଶ୍ରୀଧର ଭଞ୍ଜ ୧୫ ବର୍ଷ, ରାମ ଚନ୍ଦ୍ର ଭଞ୍ଜ ୨୧ ବର୍ଷ, ଲକ୍ଷ୍ମଣ ଭଞ୍ଜ ୧୫ ବର୍ଷ, ତ୍ରିଲୋଚନ ଭଞ୍ଜ ୧୮ ବର୍ଷ, ହରି ସେବକ ଭଞ୍ଜ ୧୭ ବର୍ଷ, ଗଦାଧର ଭଞ୍ଜ ୧୫ ବର୍ଷ, ଦୟାନିଧି ଭଞ୍ଜ ୧୧ ବର୍ଷ, ଶ୍ରୀଧର ଭଞ୍ଜ ୧୯ ବର୍ଷ, କୃପାସିନ୍ଧୁ ଭଞ୍ଜ, ୧୨ ବର୍ଷ, ମାଧବ ଭଞ୍ଜ ୩୧ ବର୍ଷ, କମଳ ଲୋଚନ ଭଞ୍ଜ ୧୩ ବର୍ଷ, ହରିହରି ଭଞ୍ଜ ୧୪ ବର୍ଷ, ପାତଳି ଗୋପୀନାଥ ଭଞ୍ଜ ୧୪ ବର୍ଷ, ଦେବେନ୍ଦ୍ର ଭଞ୍ଜ ୧୭ ବର୍ଷ, ହୃଷିକେଶ ଭଞ୍ଜ ୧୮ ବର୍ଷ, ପୀତାମ୍ବର ଭଞ୍ଜ ୨୧ ବର୍ଷ, ନଳିନାକ୍ଷ ଭଞ୍ଜ ୧୨ ବର୍ଷ, ତ୍ରିବିକ୍ରମ ଭଞ୍ଜ ୧୨ ବର୍ଷ, ଗୋବିନ୍ଦ ଭଞ୍ଜ ୧୬ ବର୍ଷ, ଗଜେନ୍ଦ୍ର ଭଞ୍ଜ ୨୫ ବର୍ଷ, ଗୋପାଳ ଭଞ୍ଜ ୨୩ ବର୍ଷ, ବନମାଳୀ ଭଞ୍ଜ ୨ ବର୍ଷ, ଗୋପୀନାଥ ଭଞ୍ଜ ୨୨ ବର୍ଷ, ପ୍ରତାପ ଧନଞ୍ଜୟ ଭଞ୍ଜ ୫୪ ବର୍ଷ, ନୀଳକଣ୍ଠ ଭଞ୍ଜ ୨ ବର୍ଷ, ରଣ ଭଞ୍ଜ ୪ ବର୍ଷ, ଘନ ଭଞ୍ଜ ୪୩ ବର୍ଷ, କୃଷ୍ଣ ଭଞ୍ଜ ୮ ବର୍ଷ, ତ୍ରିବିକ୍ରମ ଭଞ୍ଜ ୯ ବର୍ଷ, ଲକ୍ଷ୍ମଣ ଭଞ୍ଜ ୮ ବର୍ଷ, ଶ୍ରୀକର ଭଞ୍ଜ ୯ ବର୍ଷ, ଧନଞ୍ଜୟ ଭଞ୍ଜ ୩ ବର୍ଷ ଏ ରୂପେ ୫୮ ଜଣ ରାଜା ଘୁମୁସରରେ ରାଜପଣ କରିଥିଲେ ।

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଘୁମୁସରର ୫୧ ତମ ରାଜା ନୀଳକଣ୍ଠ ଭଞ୍ଜଙ୍କ ପୁତ୍ର । ନୀଳକଣ୍ଠ ପ୍ରତାପ ଧନଞ୍ଜୟ ଭଞ୍ଜଙ୍କ ପୁତ୍ର । ସେ ମାତ୍ର ୨ ବର୍ଷ ରାଜପଣ କରିଥିଲେ । ଉପେନ୍ଦ୍ରଙ୍କ ପିଲିଟି ବାଲ୍ୟ ବେଳକୁ ନୀଳକଣ୍ଠ ରାଜ୍ୟହରା ହୋଇଥିଲେ । ପରିସ୍ଥିତି କ୍ରମେ ନୀଳକଣ୍ଠ ଶିଶୁପୁତ୍ର ଉପେନ୍ଦ୍ର ସହ କିଛି ଦିନ ଧରାକୋଟ, ଆଠଗଡ଼, ନୟାଗଡ଼ଠାରେ ଆଶ୍ରୟ ନେଇଥିଲେ । ନୟାଗଡ଼ ରାଜ୍ୟର ଓଡ଼ଗାଁ ରଘୁନାଥଙ୍କ ପୀଠରେ ରାମତାରକ ମନ୍ତ୍ର ସାଧନା କରି କବିତ୍ୱ ପ୍ରାପ୍ତ ହୋଇଥିଲେ । ଉପେନ୍ଦ୍ର ଭଞ୍ଜ ସମଗ୍ର ଓଡ଼ିଆ ସାହିତ୍ୟରେ ସମ୍ରାଟ କବି ରୂପେ ଖ୍ୟାତ । ଭଞ୍ଜ ରାଜବଂଶ କବିତ୍ୱ ଓ ବୀରତ୍ୱ ପାଇଁ ପ୍ରସିଦ୍ଧି ହାସଲ କରିଛନ୍ତି । ଏହି ରାଜବଂଶରେ ବହୁରାଜା କବି ଅଛନ୍ତି । ସେହିପରି ଯୁଦ୍ଧ ତଥା ସଂଗ୍ରାମ ପାଇଁ ମଧ୍ୟ ଏହି ରାଜବଂଶର ଗରିମା ଇତିହାସରେ

...ହୋଏ । ଏତଦ୍‌ଭିନ୍ନ ଷୋଡ଼ଶ ଛାନ୍ଦରେ କବି ସୁଭଦ୍ରାଙ୍କ ...ପ୍ରସଙ୍ଗରେ ସତ୍ୟଭାମାଙ୍କ ବାଣୀ ଭିତରେ ଶ୍ରୀକୃଷ୍ଣଙ୍କ ବୀର ଭାବକୁ ...ଲ୍ଲେଖ କରିଛନ୍ତି ।

"ସୁଧନ୍ୱୀ ପ୍ରିୟା ରୀତିକି ଅନାଇ ବୋଲଇ
ସେତା ସୁନ୍ଦରୀ ପାଉଛ କାହିଁ ପାଇଁ ଗୋ ।୧୮
ଦୁଇ ଯୋଡାଇ ଅଥେ କୁନ୍ଦଙ୍କଟି ପ୍ରବଳ
ସେ ପ୍ରତାପେ ସେ ରହି ପାରଇ କେତେକାଳ ଯେ ।୧୯
ସୁରାସୁର ସିନ୍ଧୁ ମନ୍ଥି ଅମୃତ ପାଇଲେ
ସେ କୃପା ବଳୁଁ ହରି ଅମରେ ଖାଇଲେ ଯେ ।୨୦
ସେ କୃପେ କୃଷ୍ଣ ସାହାରୁ କିଛି ନାହିଁଡ଼ର
ସେ ଶିଶୁପାଳ ପ୍ରାୟ ହେବ କଂସୁବୀର ଯେ ।"୨୧

...ଲୋଚ୍ୟ କାବ୍ୟରେ ଅର୍ଜୁନଙ୍କ ସହିତ ଯୁଦ୍ଧ ହୋଇ ଗୋଗ୍ରାଙ୍କ ...ରେ ମୃତ୍ୟୁ ପରବର୍ତ୍ତୀ ଘଟଣା କବି ଉଲ୍ଲେଖ କରିଛନ୍ତି । ...ପତ୍ନୀମାନେ କଣ୍ଢ଼ି ହୋଇ ବିକଳ କ୍ରନ୍ଦନ ସହ ସୁବର୍ଣ୍ଣ ଚୁଡ଼ି ...ଙ୍ଗିବା ଦୃଶ୍ୟରେ କରୁଣରସ ପ୍ରତୀତ । ଏହି ଶ୍ରୀଚିତ୍ରପ୍ରାକ୍ଷୀରେ ...ଦ୍ରେଙ୍କ ବର୍ଣ୍ଣନା କରିଛନ୍ତି ଷଷ୍ଠଛାନ୍ଦର ଚଉତିରିଶ ପଦରେ :

"...ମାନେ ବାସକଲା ସବଳ ହୋଇ ଆପଣେ ଅବନୀପାଳ
...କିଲେ ପୁରେ ହୋଇ ଆକୁଳ ଏହି ବାର୍ତ୍ତାକୁ ଯେ ।
...ଅନ୍ତଃପୁରେ ହେଲେ ନାରୀ କଣ୍ଢ଼ି ଯେ
...ହସ୍ତରୁ ଭାଙ୍ଗିଲେ ସୁବର୍ଣ୍ଣ ଚୁଡ଼ି ଯେ ।
...ପଟ୍ଟଶାଢ଼ୀ ମୁଣ୍ଡିଲେ ଲୋତ କେଉର ଚିନ୍ତାଇ ଦେଲେ
...ନାଥ ବୋଲି ହୃଦୟ ଛଇଲେ କରକୁ ତାଡ଼ି ଯେ ।"

କବି ଶାନ୍ତରସର କମନୀୟସ୍ୱରୂପକୁ ପ୍ରଦର୍ଶନ କରିଛନ୍ତି ଦେବସ୍ତୁତି ... ମଙ୍ଗଳାଚରଣ ମାଧ୍ୟମରେ । ଅନେକ ସ୍ଥାନରେ ଭଣିତା ଓ ...ଦେଶ ଛଳରେ ବର୍ଣ୍ଣନା କରିଛନ୍ତି । ପ୍ରଥମ ଛାନ୍ଦରେ କ୍ଷେତ୍ରରାଜ ଶ୍ରୀପୁରୁଷୋତ୍ତମଙ୍କ ସ୍ତୁତି ତଥା ପ୍ରାରମ୍ଭରେ ପ୍ରତି ମଙ୍ଗଳାଚରଣ ଏବଂ ...ସମେ ଭଣିତା ଓ ଦେବସ୍ତୁତି ଜରିଆରେ ଶାନ୍ତରସର ଅଭିବ୍ୟକ୍ତି ...ଶ ପାଏ । ଏତଦ୍ ସହ କାବ୍ୟର ସ୍ଥାନେ ସ୍ଥାନେ ଶ୍ରୀକୃଷ୍ଣ ...ଦେଶ ଦେବା ବିଷୟ ଏବଂ ଗୋଗ୍ରାଙ୍କୁ ମନ୍ତ୍ରୀ ଜପାସୁରର ...ଦେଶ ଶୈଳୀ ଶାନ୍ତରସର ନିଦର୍ଶନ ।

ସୁଭଦ୍ରା ପରିଣୟ କାବ୍ୟରେ ରୌଦ୍ରରସ ପ୍ରକଟିତ ହୁଏ ଅର୍ଜୁନଙ୍କ ...ଧ ଭାବରେ । ଗୋଗ୍ରାଙ୍କ ଦୈତ୍ୟ ଯଜ୍ଞନାଶ କରି ସତ୍ୟଭାମାଙ୍କୁ ...ବାର ବଳାପରେ ଅର୍ଜୁନଙ୍କ ସହିତ ଗୋଗ୍ରାଙ୍ଗଦାନବର ଯୁଦ୍ଧ ...ସମୟ ଘଟଣା ଉଲ୍ଲେଖ କରି କବି ରୌଦ୍ରରସ ବର୍ଣ୍ଣନା କରିଛନ୍ତି । ଅର୍ଜୁନ କ୍ରୋଧ ପରବଶ ହୋଇ ଜପାସୁର ମସ୍ତକ ଛେଦନ କରିବା ...ସମୟରେ କବିଙ୍କ ବର୍ଣ୍ଣନା :

"...ସାନିଧି ଯେନି ସନିଧି ସମର୍ପେ ଧନଞ୍ଜୟ ସନ୍ନିଧି
...ବହନ୍ତେ ସକଳବିଧି ପ୍ରମଦାବର ଯେ ।
...ଧରେ ଖଡ଼ଗ କରି ଚିକୋଷ ଛେଦିଲେ ଦୈତ୍ୟମନ୍ତ୍ରୀ
ଶିରୀଷ
...ରୌଦ୍ରରସର ପ୍ରକାଶ କଲା ସମର ଯେ ।

ସତ୍ୟ ଭାମାଏ ଯାଇ ଗିରି ଗୁହାରେ ଯେ
ସୁଖେ ରହିଲେ ଶତଧନୁ ସଙ୍ଗରେ ସେ, ସଘନ ।
ରସା ଯୁଦ୍ଧ ବରଷାକାଳ ସଦୃଶ ଅଦୃଶ ଆଗ କର୍ଦ୍ଦମ
ଜାତି ହୋଇଲା ରସାନୀର ରୁଧିରେ ଯେ ।"୨୯

ଅର୍ଜୁନ ସୁଭଦ୍ରାଙ୍କୁ ନେବା ସମୟରେ ପ୍ରକଟିତ ହୁଏ ଅଦ୍ଭୁତ ରସ । ଅର୍ଜୁନ ଶୂନ୍ୟରେ ରଥ ଚାଳନା କଲା ସଦୃଶ ଓ ଆକାଶର ଆଲୌକିକ ରୂପ ସମ୍ଭାର ଧାରଣ ମଧ୍ୟରେ କବି ଅଦ୍ଭୁତ ରସକୁ ଉଲ୍ଲେଖ କରିଛନ୍ତି -

"ଶୂନ୍ୟେରଥ ଗମଇ ସମୁଦ୍ରେ ପୋତପରି
ସେ ଅର୍ଜୁନ ରୁଚିରେ ଆକାଶ ଶୋଭାଧରି ।
XX XX XX XX
ଶୁଭିଲା ଶବ୍ଦ ଅଦ୍ଭୁତେ ଯଦୁସୈନ୍ୟ ତହିଁ
ସୁଭଦ୍ରାଙ୍କୁ ନେଲା ରାମକୋପ ବହିଯେ ।"(୧୬/୪୧)

ହାସ୍ୟରସର ବିମଳ ଭାବ ପ୍ରକାଶ ପାଇଛି ସଖୀମାନଙ୍କ ପରିହାସ ଏବଂ ବିପଣୀରେ ନାଗର ନାଗରୀଙ୍କ ପ୍ରେମାଳାପ ଭିତରେ । କାବ୍ୟରେ ବର୍ଣ୍ଣିତ ହାଟରେ ନାଗର ନାଗରୀଙ୍କ ହାସ୍ୟାଳାପ ଓ ବ୍ୟଙ୍ଗ ଶ୍ଳେଷ ମିଶ୍ରିତ ହାଟର ଦୃଶ୍ୟକୁ ବର୍ଣ୍ଣନା କରିବା ଛଳରେ କବିଙ୍କ ଉକ୍ତି :

"ସେ ହାଟେ ଉରଜଙ୍କ ଯୁବତୀ ସିନ୍ଦୁର ସମ୍ପୁଟକେ ବିକନ୍ତି
ଓଷ୍ଠ ଉରଜ ଘୋଡ଼ାଇଛନ୍ତି ଅତି ଯତନେ ଯେ ।
ସିହାଣ କେହି ଯେବେଟି କହି ଏ ସମ୍ପୁଟକ
କିଣିବି ମୁହିଁ ଶୁଣି ପଣନ୍ତ ହସିଲା ହୋଇଦିଏ ଲପନେ ଯେ ।
XX XX XX XX
ରହଲେ ଯାନ୍ତି ନଦୀ ସାଗର ସରାଘେ ମିଶି ଯେ ।"(୬/୧୦)

କବି ପୁନଶ୍ଚ ପଞ୍ଚଦଶ ଛାନ୍ଦର ପଚିଶି ପଦରେ ଦୁର୍ଯ୍ୟୋଧନ କାମବିକାର ହୋଇଥିବା ଶୃଙ୍ଗାରାଶ୍ରୟୀ ହାସ୍ୟରସ ଅବତରଣ କରିଛନ୍ତି ।

ଆଲୋଚ୍ୟ କାବ୍ୟରେ ଅର୍ଜୁନଙ୍କ ସହିତ ବଳରାମଙ୍କ ଯୁଦ୍ଧ ସମୟରେ ସୁଭଦ୍ରାଙ୍କ ଭୟଭୀତ ଚେହେରାକୁ ବର୍ଣ୍ଣନା କରି କବି ଭୟାନକ ରସର ପରିବେଷଣ କରିଛନ୍ତି :

"ସଂକୁଳେ ସଂଗ୍ରାମ କଲେ ବେଢ଼ି ଅର୍ଜୁନଙ୍କୁ
ସଭୀତିରେ ସୁଭଦ୍ରା ଭଜିଲେ କର୍ମନକୁ ଯେ ।"(୧୬/୪୧)

ଏତଦ୍‌ଭିନ୍ନ କବି ଷଷ୍ଠ ଛାନ୍ଦରେ ଅର୍ଜୁନଙ୍କ ସହିତ ଗୋଗ୍ରାଙ୍କ ଦୈତ୍ୟର ଯୁଦ୍ଧରେ ତାହାର ବ୍ୟାକୁଳତାକୁ ଉଲ୍ଲେଖ କରିଛନ୍ତି ।

ଯୁଦ୍ଧ ପରବର୍ତ୍ତୀ ପର୍ଯ୍ୟାୟରେ ବର୍ଣ୍ଣିତ ଯୁଦ୍ଧ ସ୍ଥଳର ଘୃଣ୍ୟ ଦୃଶ୍ୟରୁ ବୀଭତ୍ସ ରସର ଉତ୍ପନ୍ନ । କବି ବର୍ଣ୍ଣନା ପ୍ରସଙ୍ଗରେ ଜୀବନ୍ତ ରୂପ ଦେଇଛନ୍ତି ଯୁଦ୍ଧରେ ଘଟିଥିବା ମୃତ୍ୟୁର ବିଭୀଷିକାମୟୀ ଚିତ୍ର । ଯୁଦ୍ଧ ସ୍ଥଳରେ ଶ୍ୱାନ, ଶୃଗାଳ, ଗୃଧ୍ର, ଡାକିନୀ, ପିଶାଚଙ୍କ ଆବିର୍ଭାବ

# ରସ ସାର ସୁଭଦ୍ରା ପରିଣୟ

* ସୁମିତା ମିଶ୍ର

ଓଡ଼ିଆ ସାହିତ୍ୟରେ ପଞ୍ଚସଖା ଯୁଗୀୟ ଧର୍ମଧାରା ଚେତନାକୁ ବଦାୟ ଜଣାଇବା ସହିତ ରୀତିଯୁଗର କଳ୍ପନା ବିଳାସ ଭିତରେ ସଂସ୍କୃତ ସାହିତ୍ୟ ସଙ୍ଗେ ପ୍ରତିଦ୍ୱନ୍ଦ୍ୱୀତାକରିବାର ଅପ୍ରତିହତ ପ୍ରତିଭା କେବଳ କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ। କବି ସ୍ୱକୀୟ ଅପୂର୍ବ ବର୍ଣ୍ଣନା ଚାତୁରୀ ବଳିଷ୍ଠ ଶବ୍ଦଜ୍ଞାନ ଓ ବହୁ ଶାସ୍ତ୍ର ଦର୍ଶିତାର ନିଦର୍ଶନ ସ୍ୱରୂପ ଅନେକ କାଳ୍ପନିକ ତଥା ପୌରାଣିକ କାବ୍ୟ ମାଧ୍ୟମରେ ଓଡ଼ିଆ ସାହିତ୍ୟକ ଋଦ୍ଧିମନ୍ତ କରିଥିଲେ। ଯେଉଁ ସମୟରେ ଓଡ଼ିଶା କଳ୍ପନା ବର୍ଦ୍ଧିତ ସାହିତ୍ୟ ସଂସ୍କୃତ ସାହିତ୍ୟର କ୍ଲିଷ୍ଟ ଶ୍ଲିଷ୍ଟାତ୍ମକ ଆଳଙ୍କାରିକ ତଥା ଶବ୍ଦାଡ଼ମ୍ବର ଭିତରେ ଅବହେଳିତ ହୋଇ ରହିଯାଇଥିଲା। ସେହି ଯୁଗରେ ଉପେନ୍ଦ୍ରଭଞ୍ଜ ଓଡ଼ିଆ କାବ୍ୟଶୈଳୀରେ ନିଜସ୍ୱ କାବ୍ୟାବଳୀକୁ ରୂପାୟିତ କରିଥିଲେ। ସେତେବେଳେ ସଂସ୍କୃତ କବି ତଥା ଆଳଙ୍କାରିକମାନେ କାବ୍ୟର ସୌନ୍ଦର୍ଯ୍ୟ ତତ୍ତ୍ୱ ଭାବେ ରସ, ଅଳଙ୍କାର, ରୀତି, ଧ୍ୱନି ଓ ବକ୍ରୋକ୍ତିକୁ ମୁଖ୍ୟ ଆଦର୍ଶ ରୂପେ ଗ୍ରହଣ କରୁଥିଲେ। ସେହି ସୌନ୍ଦର୍ଯ୍ୟତତ୍ତ୍ୱକୁ କାବ୍ୟକଳା ସ୍ୱରୂପ କବି ଉପେନ୍ଦ୍ରଭଞ୍ଜ କାବ୍ୟରେ ଅବଲମ୍ବନ କରିଛନ୍ତି। କାବ୍ୟର ଆଭ୍ୟନ୍ତରୀଣ ସୌନ୍ଦର୍ଯ୍ୟ ପ୍ରକଟନ ଉଦ୍ଦେଶ୍ୟରେ ଉକ୍ତ କାବ୍ୟାଦର୍ଶକୁ ନିଜର କାବ୍ୟରେ ପ୍ରତିପାଦିତ କରିଛନ୍ତି।

ସାହିତ୍ୟରେ 'ରସ' ପରିବେଷଣ ଏକ ଅନବଦ୍ୟ ସୃଷ୍ଟି। ଭାରତୀୟ ସାହିତ୍ୟରେ ରସବାଦ ଅତ୍ୟନ୍ତ ପ୍ରାଚୀନ। କଥିତ ଅଛି–ରସହୀନ କାବ୍ୟ, କାବ୍ୟ ପଦବାଚ୍ୟ ନୁହେଁ। ସଂସ୍କୃତ ସାହିତ୍ୟ ଦରବାରରେ ନାଟ୍ୟଶାସ୍ତ୍ର ପ୍ରଣେତା ଭରତ ମୁନିଙ୍କୁ ରସବାଦର ଆଦ୍ୟପ୍ରବର୍ତ୍ତକ ରୂପେ ଗ୍ରହଣ କରାଯାଏ। ଭରତ ରସକୁ କାବ୍ୟର ଆତ୍ମା ରୂପେ ସ୍ୱୀକୃତି ପ୍ରଦାନ କରିଛନ୍ତି। ରସର ସଂଜ୍ଞା ସମ୍ପର୍କରେ କୁହାଯାଏ : 'ରସ୍ୟତେ ଇତି ରସଃ' ଓ 'ସରତେ ଇତି ରସଃ' ଅର୍ଥାତ ଯାହା ଆସ୍ୱାଦନ ନିମନ୍ତେ ଯୋଗ୍ୟ କିମ୍ବା ଯାହା ପ୍ରବାହମାନ ବା ଗତିଶୀଳ ହୁଏ ତାହା ହେଉଛି ରସ। ରସ କାବ୍ୟର ଆତ୍ମା ରୂପେ ଅଭିହିତ ହେଲେ ରସର ସଂଖ୍ୟା ଭିନ୍ନ ଭିନ୍ନ ନିରୂପଣ କରିଛନ୍ତି। ସୁତରାଂ ରସ ଆଠରୁ କ୍ରମଶଃ ବୃଦ୍ଧିଲାଭ କରି ତେର ସଂଖ୍ୟାରେ ପହଞ୍ଚିଲେ ମଧ୍ୟ ମୁଖ୍ୟତଃ ସାହିତ୍ୟରେ ନଅଗୋଟି ରସକୁ ସ୍ୱୀକୃତି ପ୍ରଦାନ କରାଯାଇଛି। ସେଗୁଡ଼ିକ :

"ଶୃଙ୍ଗାର ବୀର କରୁଣାଦ୍ଭୁତ ହାସ୍ୟ ଭୟାନକାଃ
ବିଭତ୍ସ ରୌଦ୍ର ଶାନ୍ତାଶ୍ଚ ନବଧା କୀର୍ତ୍ତିତା ରସାଃ"।

ଉକ୍ତ ନବରସର ପ୍ରୟୋଗ ସଂସ୍କୃତ ସାହିତ୍ୟରେ ହେଲାଭଳି ଭଞ୍ଜ କାବ୍ୟରେ ମଧ୍ୟ ଉଲ୍ଲେଖ ଅଛି। କାଳ୍ପନିକ କାବ୍ୟ ଲାବଣ୍ୟବତୀରେ କବି ରସ ସମ୍ପର୍କରେ କହିଛନ୍ତି :

"ଧନି ବଣିକ ପସରା ସମାନ
ବିବିଧ ରସ ଦ୍ରବ୍ୟରେ ପୂର୍ଣ୍ଣ।"(୪୮/୬)

ଏତଦ୍‌ଭିନ୍ନ କବି 'ରସିକ ହାରାବଳୀ' କାବ୍ୟରେ ଶୃଙ୍ଗାର ରସକୁ ମୁଖ୍ୟ ରସ ରୂପେ ଗ୍ରହନ କରିଛନ୍ତି :

"ବିସ୍ତରଇ କରିବି ଉତ୍ତମ ଛାନ୍ଦ ଗୀତ
ରସସାର ଶୃଙ୍ଗାର ତହିଁରେ ହେବବ୍ୟକ୍ତ।"(୧/୬)

ଅନ୍ୟାନ୍ୟ କାବ୍ୟ ସଦୃଶ୍ୟ କବି ଉପେନ୍ଦ୍ର ଭଞ୍ଜ 'ସୁଭଦ୍ରାପରିଣୟ' କାବ୍ୟରେ ମଧ୍ୟ ଉକ୍ତ ନବଧା ରସକୁ ପ୍ରସଙ୍ଗ କ୍ରମେ ପ୍ରଦର୍ଶିତ କରିଛନ୍ତି। କାବ୍ୟର ପ୍ରଥମ ଛାନ୍ଦରେ ନବରସ ବର୍ଣ୍ଣନା ମୁଖ୍ୟ ରୂପେ ଗ୍ରହଣ କରି କହିଛନ୍ତି :

"ସେ ଚରିତ ନବରସ ବର୍ଣ୍ଣନା ବିଧାନେ
ସର୍ବରୂପେ ଅବକାଶ ଅଛି କଲି ମନେ ଯେ।"(୧/୧୨)

ପୁରାଣ ବିଷୟବସ୍ତୁ ନିହିତ 'ସୁଭଦ୍ରା ପରିଣୟ' କାବ୍ୟ ଅଧିକାଂଶ ଶାରଳା ମହାଭାରତରୁ ଅନୁସୃତ ହେଲେ ହେଁ କାବ୍ୟରେ କବି ଉପେନ୍ଦ୍ର ଭଞ୍ଜ ସ୍ୱାତନ୍ତ୍ର୍ୟ ପରିଲକ୍ଷିତହୁଏ। ଅପୂର୍ବ ପଦ ସଂଯୋଜନା, ଉପସ୍ଥାପନ ଶୈଳୀ ରସ ବ୍ୟଞ୍ଜକତା ଏବଂ ଉପମା ବିଳାସ ତଥା ଅଳଙ୍କରଣ ମାଧ୍ୟମରେ କବିଙ୍କର ମୌଳିକତା ପ୍ରଦର୍ଶିତ ହୋଇଛି। ରସସିକ୍ତ କାବ୍ୟ ରଚନା କରିବା ଉଦ୍ଦେଶ୍ୟରେ କବି ସତର ଛାନ୍ଦରେ କହିଛନ୍ତି :

"ସୁରସ ପୁରାଣ ଚରିତ ସିନ୍ଧୁ
ସାଧୁ ରସିକ ମାନସକୁ ମୋହୁ।"(୧୭/୨୦)

କବି ଉପେନ୍ଦ୍ରଭଞ୍ଜ ମୂଳକାବ୍ୟର ଅଙ୍ଗୀରସରେ ପରିବର୍ତ୍ତନ ଆଣି ଆହୃତ କାବ୍ୟକୁ ଶୃଙ୍ଗାର ପ୍ରଧାନ କରିଛନ୍ତି। ବୀର, କରୁଣ, ଶାନ୍ତ, ଅଦ୍ଭୁତ, ରୌଦ୍ର, ଭୟାନକ, ବୀଭତ୍ସ ଓ ହାସ୍ୟ ଆଦିକୁ ଅଙ୍ଗରସ ରୂପେ ପ୍ରତିପାଦନ କରିଛନ୍ତି।

କବି କାବ୍ୟ ଭିତିରେ ବର୍ଣ୍ଣନା କ୍ରମରେ ବିଭିନ୍ନ ଯୁଦ୍ଧ ମଧ୍ୟରେ ବୀର ରସକୁ ଉତ୍ପନ୍ନ କରିଛନ୍ତି। ଷଷ୍ଠ ଛାନ୍ଦରେ ଗୋଗ୍ରାସଙ୍କ ଦୈତ୍ୟ ଦଳ ବଳ-ସହ ଯଜ୍ଞ ସ୍ଥଳକୁ ଆଗମନ ଏବଂ ତତ୍ ସହିତ ଉଦ୍ଧବଙ୍କ ଅର୍ଜୁନ ସଙ୍ଗେ ଗୋଗ୍ରାସଙ୍କ ଯୁଦ୍ଧ ବର୍ଣ୍ଣନା ଭିତରେ ନିହିତ ଅଛି

# ହେ କବି ସମ୍ରାଟ୍ !

* ତପସ୍ୱିନୀ କର

କବିତାର ସ୍ୱର୍ଣ୍ଣ ସିଂହାସନେ ତୁମେ ତ ସମ୍ରାଟ ! ହେ କବି ସମ୍ରାଟ !!
ରଜାର ଖିଆଲେ ଗଢ଼ିଲତ ଲିପିର କୋଣାର୍କ ।
ରାଜବଂଶେ ଜନ୍ମି ସୁଦ୍ଧା ନୁହଁ ତୁମେ କଳିଙ୍ଗର ଐର ଖାରବେଳ,
ମଗଧର ଚଣ୍ଡାଶୋକ, ଅବା ଗ୍ରୀକ୍ ବୀର ଆଲେକ୍‌ଜାଣ୍ଡାର ।
ଅଣୀ କେବେ ହୋଇ ନାହିଁ ତୁମ କରେ ଲୋଡ଼ା,
ଅଣୀ ନୁହେଁ ମସୀର କମ୍ପନେ ଥରାଇଛ, କମ୍ପାଇଛ,
ପ୍ରକମ୍ପିତ କରିଅଛ ମଣିଷର ମନ ।
ତୁମେ ରଜା ବୁଝିଅଛ, ପଢ଼ିଅଛ ସବୁ ମନ କଥା
ସେଥିପାଇଁ ବୋଧହୁଏ କବିଙ୍କ ଭାଷାରେ
ତୁମ ଗୀତ ଗାଇଯାଏ 'ଅନ୍ତଃପୁରେ ଯୋଷା' 'ଆଉ ବିଲେ ବୋଲେ ଚଷା'

ଯେତେ ଯେତେ ଅଳଙ୍କାର ଶାସ୍ତ୍ର ଆଉ ନାରୀର ସୌନ୍ଦର୍ଯ୍ୟ
ମାନବର ସୁଖ, ଦୁଃଖ, ହର୍ଷ ଓ ବିଷାଦ
ପ୍ରକୃତି, ପ୍ରଣୟ ଆଉ ମିଳନ, ବିଚ୍ଛେଦ
ସବୁକରି ଏକାକାର ସୃଷ୍ଟିକଲ ବିଶ୍ୱର ବିସ୍ମୟ ଲିପିର କୋଣାର୍କ
ତୁମ ଛଡ଼ା କହ କେଉଁ ବିରହୀ ସମ୍ରାଟ କହିବି ପାରିବ ?
"ଦୂରେ ଥିଲେ ପାଶେ ଅଛି ଏହା ଥିବୁ ଘେନି
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନି"

ଅକ୍ଷରର ସାର୍ବଭୌମ ରାଷ୍ଟ୍ରେ ତୁମେ ଛତପତି, ତୁମେ ଉପେନ୍ଦ୍ର
ଲୋଡ଼ାନାହିଁ ଲୋଡ଼ାନାହିଁ ତବ ପାରିଜାତ, ଉଚ୍ଚୈଶ୍ରବା, ରମ୍ଭା ଓ ମେନକା
ସୌନ୍ଦର୍ଯ୍ୟର ଲଳନା ଉର୍ବଶୀ ହାରମାନୀ ଫେରିଯାଏ ଅମରାବତୀକୁ
ତୁମ 'କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀ' 'ଲାବଣ୍ୟବତୀ' ଓ 'ରସଲେଖା' ପାଶେ
ତୁମେ ଶିଳ୍ପୀ, ତୁମେ ତ ସମ୍ରାଟ ହେ କବି ସମ୍ରାଟ !ହେ କବି ସମ୍ରାଟ !!

ଗବେଷିକା,
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ,
ବାଣୀବିହାର, ଭୁବନେଶ୍ୱର ।

ହୋଇଥିଲା ଏବଂ ପୂତିଗନ୍ଧ ଯୁକ୍ତ ମାଂସ, ଶୋଣିତ ଲୁହରକ୍ତ ଶରୀରର ବିକୃତ ରୂପର କବି ବର୍ଣ୍ଣନା କରିଛନ୍ତି :

"ଶ୍ୱାନ, ଶୃଗାଳ, ଗୃଧ୍ର, ଡାକିନୀ, ପିଶାଚ, ଭୂତ,
ଶଣ୍ଢୀକି ଘେନି
ଶୋଭିତ କଲେ ଯୁଦ୍ଧ ଅବନୀ ଅତି ସତ୍ୱରେ ଯେ
ରୂପକାର ଯେ ଅର୍ଜ୍ଜୁନ ହୋଇ ଉତ୍ତମ ଭୋଜୀ ଅଛି ଡିଆଇ
ଖାଇବା ଉଦରକୁ ପୂରେଇ କରି ବିପରେ ଯେ
ଶିଖା ସୂପ ପ୍ରକାର ରସ ପୂରିତ ଯେ ।"(୬/୩୩)

ସୁଭଦ୍ରା ପରିଣୟ କାବ୍ୟ ଶୃଙ୍ଗାର ପ୍ରଧାନ କାବ୍ୟ । ଶୃଙ୍ଗାର ରସର ବିଭିନ୍ନ ବିଭାଗ ଅନୁଯାୟୀ କାବ୍ୟରେ ଉକ୍ତିରସକୁ କବି ପ୍ରଦାନ କରିଛନ୍ତି ।

ଅର୍ଜ୍ଜୁନଙ୍କ ପ୍ରତି ଆସକ୍ତି ଓ ସୁଭଦ୍ରାଙ୍କ ବିରହ ଜ୍ୱର ପ୍ରସଙ୍ଗରେ ଉଦ୍ଦୀପନ ଭାବର ଉପତ୍ତି । କବିଙ୍କ ବର୍ଣ୍ଣନାରେ : "ଆଶ୍ରୟ ସେ କୁହୁଧ୍ୱନି ଘେନି କୁହୁକ ବିରହିଣୀଠାରେ କୁହୁରଜନୀ କଲା ।"(୮/୧୨)

ଅନୁଭାବ ବା ସଂସ୍କାରୀଭାବ ସୁଭଦ୍ରା ସଖୀମାନଙ୍କ ଗହଣରେ ଥିବା ସମୟରେ ବିରହ ବେଦନାରେ ପୀଡ଼ିତ ହୋଇଛନ୍ତି । ଆମ୍ବଗଛର ଡାଳରେ କୋଇଲି ରାବିବାରୁ ସୁଭଦ୍ରାଙ୍କୁ ତାହା ଅମାବାସ୍ୟାର ଅନ୍ଧକାର ରାତି ତୁଲ୍ୟ ଜଣାଗଲା । ସେ ସଖୀମାନଙ୍କୁ ପଚାରିଲା ବର୍ଷମଧ୍ୟରୁ ତିଥିକ୍ଷୟ ହୋଇ ଆଜି କ'ଣ ଅମାବାସ୍ୟା ତିଥି ଏବଂ ଗ୍ରୀଷ୍ମଋତୁ ହେଲାକି ?

"ସ୍ୱରୂପତ ନମଣି ରମଣୀ ଶିରୋମଣି ଚମକଯିବିରେ
ପଡ଼ିଲାସେ,
ସୁକୁମାରୀ ସୁମନ୍ତ୍ର ମୁଖେ ଉଚ୍ଚାରିଲା ।
ସ୍ୱଜନେ ଏତେ ପଚାରିଲା । ସମ୍ବତ୍ସରରୁ କ୍ଷୟେ
ପିଣ୍ଡୁ ତିଥି ପରାୟେ ଗ୍ରୀଷମ ଋତୁକି ହୋଇଲାରେ
ସହଚରୀ ।"୧୧

ବିପ୍ରଲମ୍ଭ ଶୃଙ୍ଗାର – ଅର୍ଜ୍ଜୁନଙ୍କୁ ସାକ୍ଷାତ କଲାପରେ ସୁ
ବିମୋହିତା ହେବା ସଙ୍ଗେ ସଙ୍ଗେ ବିରହଜ୍ୱାଳାରେ ଦଗ୍
ହୋଇଛନ୍ତି । ସଖୀମାନେ ବିଭିନ୍ନ ଉପଚାର କରୁଥିବା ସମ
ଛଳରେ କୋଇଲିକୁ ପଚାରିଛନ୍ତି :

"ଛଳ, ସାଳେ କର ଦେଖାଇ ବାଳା ଗୋଚର ପାଁ
ବୋଲେରେ କୋକିଳ ଶୁଣ । ସହିଷ୍ଣୁ ହେବୁ କହି ଖଗ
ତୁହି ମନ୍ଦ ସଙ୍ଗ ହିଁ ଅଛି ପୁଣରେ । ସହଚରୀ, ଶୁଣି
ସକଗୀର । ସନ୍ଦେଶ ଘେନି ହେମାଙ୍ଗୀର । ସଖୀପ୍ରେ
ଆଜି ପାରିଲେ ମନସିଜସୁନ୍ଦର ମନ ଛନ୍ନ କରରେ ।"୮/୧

ଆଲୋଚ୍ୟ କାବ୍ୟରେ ରସ ଦୃଷ୍ଟିରୁ ଷଷ୍ଠ ଛାନ୍ଦଟିରେ ନ
ଅପୂର୍ବ ସମାବେଶ ହୋଇଛି । ରସର ଅବତାରଣ ସ
କବିଙ୍କ ଉକ୍ତି– "ସପତିରିଣ ପଦେ ପୂରିତ ବୀର କାରୁଣ
ଅଦ୍ଭୁତ ବିଭତ୍ସ ଭୟାନକ, ପ୍ରଶାନ୍ତ ରୌଦ୍ର ଶୃଙ୍ଗାର ଯେ ।"
ରସ ପରିବେଷଣ ଦୃଷ୍ଟିରୁ କବି ଉପେନ୍ଦ୍ର ଭଞ୍ଜଙ୍କ ସୁଭଦ୍ରା ପ
କାବ୍ୟ ଏକ ଶ୍ରେଷ୍ଠ କୃତୀ ।

---

ମାର୍ଫତ୍–କାହ୍ନୁଚରଣ ମିଶ୍ର,
ବୁଦ୍ଧନଗର, ବ୍ରହ୍ମପୁର ।




ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ନୟାଗଡ଼ ଜିଲ୍ଲା ଉଦ୍‌ଘାଟନ ।

## ଇଷ୍ଟର୍ଣ୍ଣ କଟକ କଞ୍ଜ୍ୟୁମର୍ସ ୱେଲ୍‌ଫେୟାର୍ ଆସୋସିଏସନ୍ ଉଦ୍‌ଘାଟିତ

ଅପ୍ରେଲ [illegible] ତାରିଖ ରବିବାର ସନ୍ଧ୍ୟାରେ ଖପୁରିଆ ଜେବର୍ ସ୍ଥିତ ମଧୁସୂଦନ ବିଦ୍ୟାପୀଠ ପ୍ରାଙ୍ଗଣରେ ନୂତନ ଭାବେ ଗଠନ ହୋଇଥିବା "ଇଷ୍ଟର୍ଣ୍ଣ କଟକ କଞ୍ଜ୍ୟୁମର୍ସ ୱେଲ୍‌ଫେୟାର୍ ଆସୋସିଏସନ୍" ଆନୁଷ୍ଠାନିକ ଭାବେ ଉଦ୍‌ଘାଟିତ ହୋଇଯାଇଛି ।

ଏହି ଉତ୍ସବରେ ଉଦ୍‌ଘାଟକ ରୂପେ ଯୋଗଦେଇ ଖାଉଟୀ ବିବାଦ ସମାଧାନ ଆୟୋଗର ସଭାପତି ମାନ୍ୟବର ବିଶ୍ୱରପତି ଶ୍ରୀଯୁକ୍ତ ଶରତ ଚନ୍ଦ୍ର ମହାପାତ୍ର ପ୍ରଦୀପ ଜାଳି ଉକ୍ତ ଆସୋସିଏସନ୍‌କୁ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଥିଲେ ଏବଂ ଉଦ୍‌ଘାଟନୀ ଭାଷଣରେ ସାମ୍ପ୍ରତିକ ସମାଜରେ ଘଟୁଥିବା କେତେକ ଖାଉଟୀ ସମସ୍ୟା ଓ ତା'ର ନିରାକରଣ ସମ୍ପର୍କରେ ବିଶଦ ଭାବରେ ବୁଝାଇଥିଲେ ଏବଂ ଖାଉଟୀମାନେ କିପରି ବିଭିନ୍ନ କ୍ଷେତ୍ରରେ ପ୍ରତାରଣର ସମ୍ମୁଖୀନ ହେଉଛନ୍ତି, ସେଥିପାଇଁ ଖାଉଟୀ ସଚେତନତା ନିମନ୍ତେ ଆହ୍ୱାନ ଜଣାଇଥିଲେ ।

ମୁଖ୍ୟ ଅତିଥି ଭାବରେ ମାନ୍ୟବର ଖାଦ୍ୟ ଓ ଯୋଗାଣ ବିଭାଗର ମନ୍ତ୍ରୀ ଶ୍ରୀଯୁକ୍ତ ଭାଗବତ ବେହେରା ଯୋଗଦେଇ କହିଥିଲେ ଯେ, ସମସ୍ତ ନାଗରିକ ମିଳିମିଶି ଏହି ଆନ୍ଦୋଳନକୁ ସମାଜର ପ୍ରତ୍ୟେକ ସ୍ତରରେ ପହଞ୍ଚାଇଲେ ଖାଉଟୀ ସମସ୍ୟା ଶୀଘ୍ର ଦୂରୀଭୂତ ହୋଇପାରିବ ଏବଂ ସମସ୍ତ ସ୍ୱେଚ୍ଛାସେବୀ ସଙ୍ଗଠନ ନିଷ୍ଠାର ସହିତ ଏହି କାର୍ଯ୍ୟକୁ ଆଗେଇ ନେବା ପାଇଁ ପରାମର୍ଶ ଦେଇଥିଲେ ।

ସମ୍ମାନିତ ଅତିଥି ଭାବେ କଟକ ସଦର ବିଧାୟକ ଶ୍ରୀଯୁକ୍ତ ଶାଳେନ୍ଦ୍ର ସିଂହ, କଟକ ଜିଲ୍ଲା ଅତିରିକ୍ତ ଜିଲ୍ଲାପାଳ (ସାଧାରଣ ବଣ୍ଟନ ବ୍ୟବସ୍ଥା) ଚୌଧୁରୀ ଗୌର ସୁନ୍ଦର ଦାଶ ଯୋଗଦେଇ ଖାଉଟୀ ସୁରକ୍ଷା ସମ୍ପର୍କିତ କେତେକ ଉଦାହରଣ ସହିତ ସ୍ଥାନୀୟ ସମସ୍ୟାବଳୀଗୁଡ଼ିକ କିପରି ଏହି ଆଇନ ବଳରେ ସମାଧାନ ହୋଇପାରିବ ସେ ଦିଗରେ ନୂତନ ଭାବେ ଗଠିତ ଏହି ସଙ୍ଗଠନ ଦ୍ରୁତ ପଦକ୍ଷେପ ନେବା ପାଇଁ ପରାମର୍ଶ ଦେବା ସହିତ ଏହି ଆନ୍ଦୋଳନକୁ ପୂର୍ବାଞ୍ଚଳ କଟକର ସମସ୍ତ ସାହି ବସ୍ତିରେ ପହଞ୍ଚାଇବା ନିମନ୍ତେ ଆହ୍ୱାନ ଜଣାଇଥିଲେ । ଏହି ଉଦ୍‌ଘାଟନୀ ଉତ୍ସବରେ ସ୍ଥାନୀୟ ଜନସାଧାରଣ ତଥା ଅନେକ ମାନ୍ୟଗଣ୍ୟ ନିମନ୍ତ୍ରିତ ଅତିଥିମାନେ ଯୋଗଦେଇଥିଲେ ।

ଆସୋସିଏସନ୍‌ର ସମ୍ପାଦକ ଶ୍ରୀ ବିବିଦାନନ୍ଦ ସାମଲ, ସ୍ୱଳ୍ପ ସମୟ ମଧ୍ୟରେ ଆସୋସିଏସନ୍ ତରଫରୁ ଅନେକ 'ଖାଉଟୀ ମାମଲା ଦାଏର୍ କରିଥିବା ସହିତ କେତେକ ଖାଉଟୀ ସମସ୍ୟା ଆପୋଷ ସମାଧାନ ମାଧ୍ୟମରେ ତୁଟାଇ ପାରିଥିବାର ତାଙ୍କ ବିବରଣୀରେ ଉଲ୍ଲେଖ କରିଥିଲେ ।

ଏହି ଉପଲକ୍ଷେ ଆୟୋଜିତ ହୋଇଥିବା ଏକ ପ୍ରଦର୍ଶନୀରେ ମାପ ଓ ଓଜନ, ଔଷଧ, ଖାଦ୍ୟ ଅପମିଶ୍ରଣ, ପ୍ୟାକେଜିଂ କମୋଡିଟିର ଷ୍ଟଲ୍‌ମାନ ଖୋଲାଯାଇଥିଲା । ପ୍ରଦର୍ଶନୀଟିକୁ ସମସ୍ତ ଅତିଥିମାନେ ବୁଲି ଦେଖିଥିଲେ ଏବଂ ଏହାର ସଫଳତା ନିମନ୍ତେ କର୍ମକର୍ତ୍ତାମାନଙ୍କୁ ପ୍ରଶଂସା କରିଥିଲେ ।

ସଭା ଆରମ୍ଭରେ ସମସ୍ତ ଅତିଥିବୃନ୍ଦ ମୂଳ ପ୍ରାଙ୍ଗଣରେ ମଧୁସୂଦନଙ୍କ ପ୍ରତିମୂର୍ତ୍ତିରେ ମାଲ୍ୟାର୍ପଣ କରିଥିଲେ ଓ ଉତ୍କଳ ବାଳାଶ୍ରମର ଛାତ୍ରମାନେ ଉଦ୍‌ଘାଟନୀ ସଙ୍ଗୀତ ପରିବେଷଣ କରିଥିଲେ । ସଂଘର ସ୍ଥାୟୀ ସଭାପତି ଶ୍ରୀ ଅମୀୟ ଚନ୍ଦ୍ର ମିଶ୍ର ସଭାରେ ସଭାପତିତ୍ୱ କରିଥିଲେ ଏବଂ ପରିଶେଷରେ ସଭ୍ୟ ଶ୍ରୀ ଜଗନ୍ନାଥ ଦାଶ ଧନ୍ୟବାଦ ଅର୍ପଣ କରିଥିଲେ ।

## ସାଲେପୁର ପଶୁ ଚିକିତ୍ସା କେନ୍ଦ୍ରର ଉନ୍ନୟନ କାର୍ଯ୍ୟ

ସାଲେପୁର ପଶୁ ଚିକିତ୍ସା କେନ୍ଦ୍ରର କେତେକ ଉନ୍ନୟନ କାର୍ଯ୍ୟ ସଫଳତାର ସହ ସମ୍ପନ୍ନ ହୋଇଥିବା ଜଣାପଡ଼ିଛି ।

ଉନ୍ନତ ଶଙ୍କର ଜାତୀୟ ବାଛୁରୀ ଉତ୍ପାଦନ ନିମନ୍ତେ କୃତ୍ରିମ ପ୍ରଜନନ ମାଧ୍ୟମରେ ଅନ୍ୟୂନ ୧୦ଟି କ୍ୟାମ୍ପ ବିଭିନ୍ନ ସ୍ଥାନରେ କରାଯାଇ ପାରିଥିବା ଜଣାପଡ଼ିଛି । ସେହିପରି ଗୋବନ୍ଧ୍ୟା ନିରାକରଣ କ୍ୟାମ୍ପ ମଧ୍ୟ କରାଯାଇ ଚିକିତ୍ସା ସୁବିଧା କରାଯିବା ସହ ମାଗଣା ଔଷଧପତ୍ର ବଣ୍ଟନ କରାଯାଇଛି ।

ପଶୁ ଚିକିତ୍ସା କେନ୍ଦ୍ର ମାଧ୍ୟମରେ ଡାକ୍ତରଖାନା ପରିସର ତଥା ଅନ୍ୟାନ୍ୟ ଅଞ୍ଚଳରେ ଉନ୍ନତ ଘାସଖଣ୍ଡ କରାଯାଇଛି । ଅଧିକ ଅଣ୍ଡା ଉତ୍ପାଦନ ନିମନ୍ତେ ଉନ୍ନତ କୁକୁଡ଼ା ଛୁଆ ଓ ଗଞ୍ଜା ଯୋଗାଇ ଦିଆଯାଇଛି । ଗୋରୁଗାଈଙ୍କୁ ସାହାଣ, ବଦବଜିଆ, ଫାଟୁଆ ପ୍ରଭୃତି ରୋଗ ନିମନ୍ତେ ପ୍ରତିଷେଧକ ଟୀକା ବିଭିନ୍ନ ଅଞ୍ଚଳରେ କ୍ୟାମ୍ପମାନ କରାଯାଇ ଦିଆଯାଇଥିବା ଜଣାଯାଉଛି ।

ଗୋପାଳନ ଜରିଆରେ ଆର୍ଥିକ ଦୁର୍ବଳ ଶ୍ରେଣୀର ଲୋକମାନଙ୍କୁ ପଶୁ ଚିକିତ୍ସା ମାଧ୍ୟମରେ ବୈଷୟିକ ପରାମର୍ଶ ତଥା ସହଯୋଗ ପ୍ରଦାନ କରାଯାଇଥିବା ବିଭାଗୀୟ ସୂତ୍ରରୁ ଜଣାପଡ଼ିଛି ।

## 'କଳିଙ୍ଗ କୁଟୀର ଯୋଜନା' ଉଦ୍‌ଘାଟିତ

ଉଦଳାରୁ ୯ କିଃମିଃ ଦୂର ନୂଆଡିହାଠାରେ ମୟୂରଭଞ୍ଜ ଜିଲ୍ଲାର ପ୍ରଥମ "କଳିଙ୍ଗ କୁଟୀର" ଯୋଜନା ଗତ ୧୬ ତାରିଖ ଦିନ ଜିଲ୍ଲାପାଳ ଶ୍ରୀ ବିପିନ ସାକ୍‌ସେନାଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଯାଇଛି । ନୂଆଡିହା ପଞ୍ଚାୟତରେ ଗୃହ ନିର୍ମାଣ ସହିତ ଲୋକଙ୍କର ଅର୍ଥନୈତିକ ଓ ପାରିପାର୍ଶ୍ୱିକ ଉନ୍ନତି ସମ୍ପର୍କରେ ଜିଲ୍ଲାପାଳ ଗୋଷ୍ଠୀ ପରିଚାଳନା ବର୍ଗର ସମ୍ପାଦକ ଶ୍ରୀ ରବୀନ୍ଦ୍ର ଜେନାଙ୍କ ସହିତ ଆଲୋଚନା କରିଥିଲେ । କଳିଙ୍ଗ କୁଟୀର ଯୋଜନାରେ ୪୦୦ ଉପଭୋକ୍ତା ଗୃହ ନିର୍ମାଣ କରିବେ ବୋଲି ସମ୍ପାଦକ ଜଣାଇଥିଲେ ।

ଗୃହ ନିର୍ମାଣର ସୁବିଧା ପାଇଁ ନୂଆଡିହାଠାରେ ଏକ ଗୃହ ଉପକରଣ ନିର୍ମିତ କେନ୍ଦ୍ରର ସ୍ଥାପନ ହେବା ସହିତ ଗୃହ ନିର୍ମାଣକୁ ତ୍ୱରାନ୍ୱିତ କରିବାକୁ ଜିଲ୍ଲାପାଳ ଯୋଜନା ଅଧିକାରୀଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଋଣ ମିଳିବା ପାଇଁ ଆବଶ୍ୟକ ନକ୍ସାପତ୍ର ୧୦ ଦିନ ମଧ୍ୟରେ ସମ୍ପୂର୍ଣ୍ଣ କରି ଓଡ଼ିଶା ରାଜ୍ୟ ଗୃହ ନିର୍ମାଣ ସଂସ୍ଥାକୁ



# ସମ୍ବାଦ ପରିକ୍ରମା

## ବାଲେଶ୍ୱର ଓ ଭଦ୍ରକ ଜିଲ୍ଲାରେ ୫ଟି ବିହନ ବିକ୍ରୟ କେନ୍ଦ୍ର ଉଦ୍‌ଘାଟିତ

ବାଲେଶ୍ୱର ଓ ଭଦ୍ରକ ଜିଲ୍ଲାର ଚରମ୍ପା, ଦୁହୁରା, ରୂପସା, କମର୍ଦ୍ଦା ଓ ବାଲେଶ୍ୱର ସହରଠାରେ ୫ଟି ବିହନ କେନ୍ଦ୍ର ଗତ ୨୪ ଓ ୨୫ ତାରିଖରେ ରାଜ୍ୟ ବିହନ ନିଗମ ଅଧ୍ୟକ୍ଷଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଛି ।

କୃଷୀମାନଙ୍କୁ ଉନ୍ନତମାନର ଅଧିକ ଅମଳକ୍ଷମ ବିହନ ଖୁବ ଶୀଘ୍ର ଯୋଗାଇଦେବା ଉଦ୍ଦେଶ୍ୟରେ ଏହି ବିହନ ବିକ୍ରୟକେନ୍ଦ୍ରମାନ ସ୍ଥାପନ କରାଯାଇଛି । ବିଭିନ୍ନ କିସମର ଅଧିକ ଅମଳକ୍ଷମ ଧାନ ବିହନ କିଲୋପିଛା ୪ ଟଙ୍କା ୫୦ ପଇସା ଦରରେ ଓ ଧନିଆ ବିହନ କିଲୋ ୬୦ଟଙ୍କା ଦରରେ ବିକ୍ରୟ କରାଯାଉଛି । ଏହିସବୁ ବିହନ ବିକ୍ରୟ କେନ୍ଦ୍ର ଉଦ୍‌ଘାଟନ ଉତ୍ସବରେ କୃଷୀ ସଭାମାନ ଆୟୋଜନ କରାଯାଇଥିଲା । ଚରମ୍ପା ହାଟଠାରେ ଅନୁଷ୍ଠିତ କୃଷୀ ସଭାରେ ଶ୍ରୀ ଶରତଚନ୍ଦ୍ର ମିଶ୍ର ସଭାପତିତ୍ୱ କରିଥିଲେ । ଦୁହୁରାଠାରେ ଅନୁଷ୍ଠିତ ସଭାରେ ସ୍ଥାନୀୟ ସରପଞ୍ଚ ଶ୍ରୀ ପାଗଳ ପଲେଇ ଓ ରୂପସାଠାରେ ଅନୁଷ୍ଠିତ ସଭାରେ ସ୍ଥାନୀୟ ସରପଞ୍ଚ ଶ୍ରୀ ବରଦା ପ୍ରସନ୍ନ ପଟ୍ଟନାୟକ ଓ କମର୍ଦ୍ଦାଠାରେ ଅନୁଷ୍ଠିତ ସଭାରେ ଭୋଗରାଇ ପଞ୍ଚାୟତ ସମିତି ଅଧ୍ୟକ୍ଷ ଶ୍ରୀ ଅନନ୍ତରାଉତ ସଭାପତିତ୍ୱ କରିଥିଲେ ଓ ବହୁକୃଷୀ ଯୋଗ ଦେଇଥିଲେ । ଏହି ସବୁ ସଭାମାନଙ୍କରେ ରାଜ୍ୟ ବିହନ ନିଗମର ଅଧ୍ୟକ୍ଷ ଶ୍ରୀ ବିକ୍ରମ କେଶରୀ ବର୍ମା ଉଦ୍‌ବୋଧନ ଦେଇ ସବୁଜ ବିପ୍ଳବକୁ ସଫଳ କରିବା ପାଇଁ ଅଧିକ ଅମଳକ୍ଷମ ବିହନର ଉପଯୋଗିତା ବିଷୟରେ ଆଲୋକପାତ କରିଥିଲେ । ପଞ୍ଜାବ ଓ ହରିଆନାର କୃଷୀମାନେ ଅଧିକ ଅମଳକ୍ଷମ ବିହନ ବ୍ୟବହାର କରି କୃଷି ଉତ୍ପାଦନ ଯେପରି ବୃଦ୍ଧି କରିଛନ୍ତି ତାହାର ଦୃଷ୍ଟାନ୍ତ ଦେଇଥିଲେ । କୃଷୀମାନଙ୍କୁ ସମାଜରେ ଉପଯୁକ୍ତ ସମ୍ମାନ ଦେବାପାଇଁ ଓ କୃଷି କାର୍ଯ୍ୟପ୍ରତି ଅଧିକ ଗୁରୁତ୍ୱ ଦେବା ପାଇଁ ଶ୍ରୀ ବର୍ମା ପରାମର୍ଶ ଦେଇଥିଲେ ।

## ବ୍ରହ୍ମପୁରରେ ପରିବେଶ ଶୀର୍ଷକ ଆଲୋଚନାଚକ୍ର

ବିଷୁବ ସଂକ୍ରାନ୍ତି ଦିନ ବ୍ରହ୍ମପୁର ଟାଉନ ହଲଠାରେ ଏକ ଆଲୋଚନାଚକ୍ର ଓ ନାଟକ ଅନୁଷ୍ଠିତ ହୋଇଥିଲା । ଶୀର୍ଷକ ଥିଲା "ପରିବେଶ, କଳା ଓ ସଂସ୍କୃତି" । ସଭାପତିତ୍ୱ କରିଥିଲେ ବିଶିଷ୍ଟ ସମାଜସେବୀ ଓ ପ୍ରଖ୍ୟାତ କବି କୁଞ୍ଜବିହାରୀ ନାୟକ ।

ଉଦ୍‌ଘାଟନ କରିଥିଲେ ଡଃ ଦୟାନିଧି ସିଙ୍ଗ୍ରୁ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ବରିଷ୍ଠ ଅଧ୍ୟାପକ ପ୍ରହ୍ଲାଦ ପଣ୍ଡା ସ୍ଥାନୀୟ ମହାମାୟୀ କଲେଜର ଅଧ୍ୟକ୍ଷ ଡଃ ପିଃଏସଃଏନଃ ପାତ୍ର ଓ ବିଶିଷ୍ଟ ଲେଖକ ଉଦୟନାଥ ମହାପାତ୍ର ପ୍ରମୁଖ ବହୁମୁଖୀ ପ୍ରତିଭା ସମ୍ପନ୍ନ ବକ୍ତାମାନେ ବିଷୟବସ୍ତୁକୁ ବିଭିନ୍ନ ଦିଗ୍ଦୃଷ୍ଟିକୋଣରୁ ଆଲୋଚନା କରି ପରିବେଶକୁ ପ୍ରାକୃତିକ ଓ ଆଧୁନିକୀକରଣ କରିବାକୁ ହେଲେ କଳା ଓ ସଂସ୍କୃତିକୁ ଉଦ୍ଧାର କରିବା ସଙ୍ଗେ ସଙ୍ଗେ ଗୁଣିମନ୍ତ କରିବାକୁ ହେବ ବୋଲି କହିଥିଲେ । ପରିବେଶର ଉପଯୁକ୍ତ ସୁରକ୍ଷା ଓ ଅଭିବୃଦ୍ଧି ନିମନ୍ତେ କଳା ଓ ସଂସ୍କୃତି ଜରିଆରେ ସାଧାରଣ ଲୋକଙ୍କ ମଧ୍ୟରେ ଏବଂ ବିଶେଷକରି ଗ୍ରାମାଞ୍ଚଳରେ ବହୁଳ ପ୍ରଚାର ପ୍ରସାର ଓ ବିସ୍ତୃତ ଉଦ୍ୟମ କରିବାକୁ ବକ୍ତାମାନେ ଆହ୍ୱାନ ଦେଇଥିଲେ ।

'ଆମେ କଳାକାର' ଜରିଆରେ ସାମ୍ପ୍ରତିକ ସାମାଜିକ ସାଂସ୍କୃତିକ ଓ ପରିବେଶର ବ୍ୟବସ୍ଥା ସମ୍ପର୍କୀୟ ଏକ ଗଣନାଟ୍ୟ ଅନୁଷ୍ଠିତ ହୋଇଥିଲା ।

ସର୍ବଶ୍ରୀ ଯଦୁ ରଥ, ମଦନ ମିଶ୍ର, ପ୍ରଦୀପ ସାହୁ, କୁନି ମିଶ୍ର ପ୍ରମୁଖ ଉକ୍ତ ନାଟକରେ ଅଂଶ ଗ୍ରହଣ କରିଥିଲେ ।

## ତାଳଚେରରେ ମା' ହିଙ୍ଗୁଳା ଯାତ୍ରା

ତାଳଚେର ବେସାମରିକ ପ୍ରତିରକ୍ଷା ଅନୁଶାସକ ଶ୍ରୀ ସତ୍ୟବ୍ରତ ପାଢ଼ୀଙ୍କ ତତ୍ତ୍ୱାବଧାନରେ ୨୫ ଜଣ ସିଭିଲ ଡିଫେନ୍ସ ସ୍ୱେଚ୍ଛାସେବୀ ଗୋପାଳ ପ୍ରସାଦଠାରେ ଅନୁଷ୍ଠିତ ମା' ହିଙ୍ଗୁଳାଙ୍କ ପ୍ରସିଦ୍ଧ ଯାତ୍ରାରେ ଉପସ୍ଥିତ ରହି ଶାନ୍ତି ଶୃଙ୍ଖଳା ରକ୍ଷା କରିବା ସଙ୍ଗେ ସଙ୍ଗେ ୨ ଜଣ ଆହତ ବ୍ୟକ୍ତିଙ୍କୁ ପ୍ରାଥମିକ ଚିକିତ୍ସା ପ୍ରଦାନ କରି ଡାକ୍ତରଖାନାକୁ ସ୍ଥାନାନ୍ତର କରିଥିଲେ ।

ମା' ହିଙ୍ଗୁଳାଙ୍କ ପୀଠ ଗୋପାଳ ପ୍ରସାଦଠାରେ ୯ ଦିନ ଧରି ମା' ହିଙ୍ଗୁଳାଙ୍କ ପୂଜା ଅର୍ଚ୍ଚନା କରାଯାଇଥିଲା । ଏହି ଯାତ୍ରାକୁ ତାଳଚେର, ଅନୁଗୋଳ ଏବଂ ଦୂର ଦୂରାନ୍ତରୁ ଲକ୍ଷାଧିକ ଲୋକମାନେ ମା'ଙ୍କର ଦର୍ଶନ ପାଇଁ ଆସିଥିଲେ । ଏ ବର୍ଷ ଅସହ୍ୟ ଗରମ ଏବଂ ଜଳାଭାବ ସତ୍ତ୍ୱେ ପ୍ରାୟ ୨ ଲକ୍ଷ ଭକ୍ତଙ୍କର ସମାଗମ ହୋଇଥିଲା । ତାଳଚେର ଉପଖଣ୍ଡର ଉପଜିଲ୍ଲାପାଳଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଶାନ୍ତି ଶୃଙ୍ଖଳା ରକ୍ଷା, ପାନୀୟଜଳ ଯୋଗାଣ, ଆଲୋକ ବ୍ୟବସ୍ଥା, ଯାନବାହନ ସୁବିଧା ଆଦିର ବ୍ୟାପକ ବ୍ୟବସ୍ଥା କରାଯାଇଥିଲା । ସ୍ଥାନୀୟ ଯୁବକସଂଘ ସ୍କାଉଟ, ଏନ୍‌ଃସିଃସିଃ, ସ୍ୱେଚ୍ଛାସେବୀଗଣ ଲୋକମାନଙ୍କ ସେବା କରିଥିବା ସଙ୍ଗେ ସଙ୍ଗେ ସ୍ଥାନୀୟ ପୋଲିସକୁ ଶାନ୍ତି ଶୃଙ୍ଖଳା ରକ୍ଷା କରିବାରେ ସାହାଯ୍ୟ କରିଥିଲେ ।

ପ୍ରଧାନ ପରି ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ନୃତ୍ୟଗୁରୁ ଭାବେ ପରିଚିତ । ସେଥିପାଇଁ ଆମେ ଗର୍ବ କରିବା ଉଚିତ । ଓଡ଼ିଶାର ପ୍ରତିଭାବାନ ବ୍ୟକ୍ତିମାନଙ୍କର ଗୌରବମୟ ଇତିହାସ ଲୋକ ଲୋଚନକୁ ଆଣିବା ପାଇଁ ବର୍ତ୍ତମାନ ଆମ ସରକାର ଉଦ୍ୟମ ଜାରି କରିଛନ୍ତି ଏବଂ ସେମାନଙ୍କର ଜୟନ୍ତୀ ଉତ୍ସବ ପାଳନ କରାଯାଉଛି । ଆମମାନଙ୍କ ମନରୁ ହୀନମନ୍ୟତା ଦୂର କରି ଗୌରବମୟ ଇତିହାସକୁ ଜାଗ୍ରତ କରିବା ଆବଶ୍ୟକ ।

ଉତ୍ସବରେ ସମ୍ମାନୀୟ ଅତିଥି ଭାବେ ଯୋଗଦେଇ ଲୋକସଭା ସଦସ୍ୟ ବ୍ରଜକିଶୋର ତ୍ରିପାଠୀ କହିଲେ, ଆମ ରାଜ୍ୟର ଓଡ଼ିଶୀନୃତ୍ୟ ଓ ସଙ୍ଗୀତ ଭାରତରେ ଉପଯୁକ୍ତ ସ୍ଥାନ ପାଇପାରିନାହିଁ । ଓଡ଼ିଶାର ସାଂସ୍କୃତିକ ବିକାଶ ପାଇଁ ଚନ୍ଦ୍ରଶେଖରଙ୍କୁ ଓଡ଼ିଶା ଜାତି ସବୁବେଳେ ମନେ ପକାଇବ । ଆମେ ଅତୀତକୁ ନ ମାନିଲେ ଭବିଷ୍ୟତରେ ଆଗେଇ ପାରିବୁ ନାହିଁ ।

ଏହି ଉତ୍ସବରେ ଅଧ୍ୟକ୍ଷତା କରି ସ୍ଥାନୀୟ ବିଧାୟକ ତଥା ଓଡ଼ିଶା ବିଧାନସଭାର ମୁଖ୍ୟ ସଚେତକ ଶ୍ରୀ ଅଜୟ କୁମାର ଜେନା କହିଲେ ଯେ, ଗୁରୁ ଗଙ୍ଗାଧର ନୃତ୍ୟ କଳାକୁ ତାଙ୍କ ଜନ୍ମ ଭୂମିରେ ପ୍ରତିଷ୍ଠା କରିବା ପାଇଁ ଉଦ୍ୟମ ଆରମ୍ଭ କରିଥିବାରୁ ତାଙ୍କୁ ପ୍ରଶଂସା କରି ଏହାର ଉନ୍ନତି କାମନା କରିଥିଲେ । ଓଡ଼ିଶା କଳା ଓ ବିଜ୍ଞାନ କ୍ଷେତ୍ରରେ ଏକ ଆଗୁଆ ରାଜ୍ୟ ଥିଲା । ଅତୀତର ଗୌରବକୁ ମନେପକାଇ କାର୍ଯ୍ୟକଲେ ଆମେ ଭବିଷ୍ୟତରେ ଉନ୍ନତି କରିପାରିବା ।

ଏହି ଅନୁଷ୍ଠାନର ପ୍ରତିଷ୍ଠାତା ଗୁରୁ ଗଙ୍ଗାଧର ପ୍ରଧାନ ପ୍ରାରମ୍ଭିକ ସୂଚନା ଦେଇ କଳା ଓ ସଂସ୍କୃତି ବିନା ମଣିଷ ସମାଜରେ ବଞ୍ଚିପାରିବ ନାହିଁ ବୋଲି ବ୍ୟକ୍ତ କରିଥିଲେ । ଶ୍ରୀ ନୃସିଂହ ଚରଣ ଦାସ, ଅନୁଷ୍ଠାନର ସମ୍ପାଦକ ଗୋପବନ୍ଧୁ ତ୍ରିପାଠୀ, ଖଜୁରିଆ ଷ୍ଟେଟ ବ୍ୟାଙ୍କ ବ୍ରାଞ୍ଚ ମ୍ୟାନେଜର କୁମାରୀ ସୁଷମା ପତି ପ୍ରମୁଖ ଭାଷଣ ଦେଇଥିଲେ । ଅନୁଷ୍ଠାନର ପରିଚାଳନା ସମ୍ପାଦକ ଶ୍ରୀ ଦେବରାଜ ତ୍ରିପାଠୀ ଧନ୍ୟବାଦ ଦେଇଥିଲେ । ଶେଷରେ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଇଥିଲା ।

## ୩୦ ବର୍ଷ ପରେ କଟକରେ ସ୍ୱେରେଜ ବ୍ୟବସ୍ଥା ପ୍ରବର୍ତ୍ତନର ଶୁଭାରମ୍ଭ

କଟକ ସହର ପରିମଳ ବ୍ୟବସ୍ଥାର ଉନ୍ନତି ପାଇଁ ୧୯୬୨ ମସିହାରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଏବଂ ପରବର୍ତ୍ତୀ ପର୍ଯ୍ୟାୟରେ ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ବୀରେନ ମିତ୍ର କଟକ ସହରରେ ଭୂତଳ ନାଳ ନର୍ଦ୍ଦମା (ସ୍ୱେରେଜ) ବ୍ୟବସ୍ଥା ପାଇଁ କେତେକ ପଦକ୍ଷେପ ଗ୍ରହଣ କରିଥିଲେ । ତଦନୁସାରେ କଟକରେ କେତେକ ଅଞ୍ଚଳରେ ଏହି ଭୂତଳ ନାଳ ନିର୍ମାଣ କରାଯାଇଥିଲେ ମଧ୍ୟ ତାହାକୁ ପୂର୍ଣ୍ଣାଙ୍ଗ କରାଯାଇ ନଥିଲା । ଏପରିକି ଯେଉଁ ଅଞ୍ଚଳରେ ଏହି ଭୂତଳ ନାଳ ନିର୍ମାଣ ଶେଷ ହୋଇଛି ସେଠାରେ ଅନ୍ୟାନ୍ୟ ଆନୁଷଙ୍ଗିକ ବ୍ୟବସ୍ଥା କରାନଯିବାରୁ ସମ୍ପୃକ୍ତ ଅଞ୍ଚଳର ଲୋକେ ଏହି (ସ୍ୱେରେଜ) ବ୍ୟବସ୍ଥାର ସୁଫଳ ପାଇ ପାରିନାହାନ୍ତି ।

୧୯୯୦ରେ ଶ୍ରୀ ବିଜୁ ପଟ୍ଟନାୟକ ପୁନଶ୍ଚ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବା ପରେ ଏହାର କାର୍ଯ୍ୟକାରିତା ଦିଗରେ ପୁନଶ୍ଚ ଉଦ୍ୟମ ଆରମ୍ଭ ହୋଇଛି । ଏପରିକି ଚଳିତ ମାସର ରାଜାବଗିଚା ବଡ଼େଇସାହି ସମ୍ପୂର୍ଣ୍ଣ ଅଞ୍ଚଳ, ଝାଞ୍ଜିରୀମଙ୍ଗଳା, ଛତ୍ରବଜାର ଏବଂ ମହତାବରୋଡ଼ର କେତେକ ଅଂଶରେ ନିର୍ଦ୍ଧାରିତ ଫର୍ମରେ ଆବେଦନ କରିଥିବା ବ୍ୟକ୍ତିଙ୍କ ଘରର ପାଇଖାନା ଆବର୍ଜନା ପାଇପକୁ ଭୂତଳ ନର୍ଦ୍ଦମାରେ ସଂଯୋଗ କରିବାର ବ୍ୟବସ୍ଥା ହୋଇଛି ଓ ତାହାକୁ କାର୍ଯ୍ୟକାରୀ କରାଯାଇଛି ।

ଏଥିପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ନିର୍ଦ୍ଦେଶରେ ରାଜ୍ୟ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ମହାନ୍ତି ଏବଂ ୱାଟର ସ୍ୱେରେଜ ବୋର୍ଡ଼ର ଉପାଧ୍ୟକ୍ଷ ଶ୍ରୀ ପ୍ରଭାତ କୁମାର ତ୍ରିପାଠୀଙ୍କ ପ୍ରଚେଷ୍ଟା ଯୋଗୁଁ ସମ୍ପୃକ୍ତ ବିଭାଗୀୟ ଅଫିସର ଏବଂ କର୍ମଚାରୀମାନେ ଏହି କାର୍ଯ୍ୟକୁ ଅଗ୍ରାଧିକାରଭିତ୍ତିରେ ଶେଷ କରିବା ପାଇଁ ଉଦ୍ୟମ ଚଳାଇଥିବା ଲକ୍ଷ୍ୟ କରାଯାଉଛି ।

ଏଠାରେ ସୂଚନାଯୋଗ୍ୟ ଯେ ସମୁଦାୟ କଟକ ସହରକୁ ୧୯ଟି ସ୍ୱେରେଜ ବ୍ଲକରେ ଉଲ୍ଲେଖ କରି ୧୯୬୫ ମସିହାରେ ପ୍ରାୟ ୫୨୬ ଲକ୍ଷ ୭୩ ହଜାର ଟଙ୍କା ବ୍ୟୟରେ ୩ ଲକ୍ଷ ଜନସଂଖ୍ୟା ବିଶିଷ୍ଟ କଟକ ସହର ପାଇଁ ଏକ ବିଧିବଦ୍ଧ ଯୋଜନା ପ୍ରସ୍ତୁତ ହୋଇଥିଲା । ମାତ୍ର ରାଜ୍ୟ ସରକାରଙ୍କ ପକ୍ଷରେ ସେତେବେଳେ ଏକ ସଙ୍ଗେ ଏତେ ଟଙ୍କା ବ୍ୟୟ କରିବା ସମ୍ଭବ ନ ହେବାରୁ ଏହାକୁ ପର୍ଯ୍ୟାୟକ୍ରମେ କରାଯିବା ଲାଗି ସ୍ଥିର ହୋଇଥିଲା ।

ପ୍ରଥମ ପର୍ଯ୍ୟାୟରେ ୧୯ଟି ବ୍ଲକ ମଧ୍ୟରୁ କେବଳ ୭୫ ହଜାର ଲୋକଙ୍କ ପାଇଁ ୬ଟି ସ୍ୱେରେଜ ବ୍ଲକର କାର୍ଯ୍ୟ ୧୯୬୮ ଜୁନ ମାସରେ, ୧୧୦ ଲକ୍ଷ ୨୬ ହଜାର ଟଙ୍କା ବ୍ୟୟ ଲାଗି ସରକାରୀ ସ୍ୱୀକୃତି ମିଳିଲା । ମାତ୍ର ଏହି କାର୍ଯ୍ୟ ନିର୍ଦ୍ଧାରିତ ସମୟରେ ଆରମ୍ଭ ନ ହେବାରୁ ଏହାର ବ୍ୟୟ ଅଟକଳ ୨୫୮ ଲକ୍ଷ ୪୨ ହଜାର ଟଙ୍କାକୁ ବୃଦ୍ଧି ପାଇଛି । ୧୯୭୮ରୁ ୧୯୮୨/୮୩ ସୁଦ୍ଧା ଉକ୍ତ ଟଙ୍କା ଖର୍ଚ୍ଚ କରାଯିବା ଯୋଗୁଁ ସମୁଦାୟ କାର୍ଯ୍ୟ ସେହି ଟଙ୍କାରେ ନ ହୋଇ କେବଳ ଅର୍ଦ୍ଧାଧିକ କାର୍ଯ୍ୟ ଶେଷ ହୋଇଥିଲା ।

ପୁନଶ୍ଚ ସମୁଦାୟ କାର୍ଯ୍ୟ ଶେଷ ପାଇଁ ୧୯୭୮ ମସିହାରେ ୨୭୨ ଲକ୍ଷ ୧୦ ହଜାର ଟଙ୍କା ଆବଶ୍ୟକ ହେବ ବୋଲି ଦର୍ଶାଯାଇଥିଲା ଏବଂ ସେହି ଅର୍ଥ ମଞ୍ଜୁରୀ ପାଇଁ ରାଜ୍ୟ ସରକାରଙ୍କୁ ଦିଆଯାଇଥିଲେ ମଧ୍ୟ ବିଗତ ସରକାରଙ୍କ ଅମଳରେ ଆଉ କୌଣସି ଅର୍ଥ ଏଥିପାଇଁ ନ ମିଳିବାରୁ ସେ ଦିଗରେ ବିଶେଷ କିଛି ଅଗ୍ରଗତି ହୋଇନଥିଲା ।

ବର୍ତ୍ତମାନର ସରକାର କ୍ଷମତାକୁ ଆସିବା ପରେ ଗତବର୍ଷ ଏଥିପାଇଁ ପୁନଶ୍ଚ କଟକ ସହରର ସ୍ୱେରେଜ ବ୍ୟବସ୍ଥାର କାର୍ଯ୍ୟକାରିତା ପାଇଁ ୨୫ ଲକ୍ଷ ଟଙ୍କା ମଞ୍ଜୁର କରିବାରୁ ତହିଁରେ ୧୯ ନମ୍ବର, ୧୪ ନମ୍ବର ଆଂଶିକ ସ୍ୱେରେଜ ବ୍ଲକକୁ କାର୍ଯ୍ୟକାରୀ କରିବା ପାଇଁ ପଦକ୍ଷେପ ନିଆଯାଇଛି । ଚଳିତ ଆର୍ଥିକ ବର୍ଷରେ ଆଉ ୨୫ ଲକ୍ଷ ଟଙ୍କା ବ୍ୟୟ ବରାଦ ହୋଇଛି । ଏହା ଫଳରେ ଖୁବ୍ ଶୀଘ୍ର ରାଣୀହାଟ ଶରଡ଼ିଆ ସାହି ଓ ଫ୍ରେଣ୍ଡସ କଲୋନୀରେ ସ୍ୱେରେଜ ବ୍ୟବସ୍ଥା କାର୍ଯ୍ୟକାରୀ ହେବ ବୋଲି ଜଣା ପଡ଼ିଛି ।

ପଠାଇବା ପାଇଁ ଗୁରୁତ୍ୱ ଦେଇଥିଲେ । ଗ୍ରାମାଞ୍ଚଳ ଲୋକଙ୍କର ଆର୍ଥିକ ଉନ୍ନତି ପାଇଁ ଧାନ, ଗହମ ବ୍ୟତୀତ ଅନ୍ୟାନ୍ୟ ବିଭିନ୍ନ ଶସ୍ୟ ପାଇଁ ଆବଶ୍ୟକ ହେଉଥିବା ସମସ୍ତ ସୁବିଧା ସୁଯୋଗ ଜିଲ୍ଲା ପ୍ରଶାସନ ତରଫରୁ ଯୋଗାଇ ଦିଆଯିବ ବୋଲି ଜିଲ୍ଲାପାଳ ଦୃଢ଼ ପ୍ରତିଶ୍ରୁତି ଦେଇଥିଲେ । ନୂଆଡ଼ିହା ଗ୍ରାମପଞ୍ଚାୟତକୁ ଆତ୍ମନିର୍ଭରଶୀଳ ପଞ୍ଚାୟତ ଏବଂ 'କଳିଙ୍ଗ କୁଟୀର' ଗୃହ ନିର୍ମାଣ ଯୋଜନାର ସଫଳ ରୂପାୟନ ପାଇଁ ସ୍ଥାନୀୟ ଆଇ.ଟି.ଡି.ଏ.ର ପ୍ରକଳ୍ପ ପ୍ରଶାସକ, ବି.ଡ଼ି.ଓ. ଏବଂ ଉପଜିଲ୍ଲାପାଳଙ୍କୁ ସାହାଯ୍ୟ କରିବାକୁ ପରାମର୍ଶ ଦେବା ସଙ୍ଗେ ସଙ୍ଗେ ଲୋକଙ୍କର ଏହି ସ୍ୱେଚ୍ଛାସେବୀ ଉଦ୍ୟମକୁ ଜିଲ୍ଲାପାଳ ପ୍ରଶଂସା କରିଥିଲେ ।

## ରାଜ୍ୟସ୍ତରୀୟ ନୌଶୁଳନା ପ୍ରତିଯୋଗିତା

ଗତ ୧୪ ଏବଂ ୧୫ ତାରିଖ ଦୁଇଦିନ ଧରି ସୁବର୍ଣ୍ଣପୁର ଜିଲ୍ଲାର ସଦର ମହକୁମା ସୋନପୁରଠାରେ ପାରମ୍ପରିକ ରାଜ୍ୟସ୍ତରୀୟ ନୌଶୁଳନା ପ୍ରତିଯୋଗିତା ପ୍ରଥମ ଥର ପାଇଁ ମହାସମାରୋହରେ ଅନୁଷ୍ଠିତ ହୋଇଯାଇଛି ।

ପ୍ରତିଯୋଗିତାର ଉଦ୍‌ଘାଟନୀ ଉତ୍ସବରେ ରାଜ୍ୟ ପର୍ଯ୍ୟଟନ ମନ୍ତ୍ରୀ ଅନଙ୍ଗ ଉଦୟ ସିଂହଦେଓ ମୁଖ୍ୟ ଅତିଥି ଭାବେ ଯୋଗଦେଇ ତାଙ୍କ ଭାଷଣରେ କହିଲେ ଯେ ପୁରାତନ ସଂସ୍କୃତିର ପୁନଃ ଉଦ୍ଧାର ଓ ଲୋକମାନଙ୍କ ମଧ୍ୟରେ ଜନ ସଚେତନତା ଜାଗ୍ରତ କରିବା ଏହି ପ୍ରତିଯୋଗିତାର ମୁଖ୍ୟ ଉଦ୍ଦେଶ୍ୟ । ସ୍ଥାନୀୟ ବିଧାୟକ ରୁଦ୍ରରୁ କୁଶଳ ଏଥିରେ ସମ୍ମାନୀତ ଅତିଥି ଭାବରେ ଯୋଗଦେଇ ମହିରମାଳିନୀ ସୋନପୁରଠାରେ ଏହି ପ୍ରତିଯୋଗିତା ଅନୁଷ୍ଠିତ କରିଥିବାରୁ ବିଭାଗୀୟ କର୍ତ୍ତୃପକ୍ଷଙ୍କୁ ଧନ୍ୟବାଦ ଜଣାଇଥିଲେ । ଉକ୍ତ ଉତ୍ସବରେ ସୋନପୁର ଜିଲ୍ଲାପାଳ ରମେଶ ପ୍ରସାଦ ନାଏକ ସଭାପତିତ୍ୱ କରିଥିଲେ ଏବଂ ସ୍ଥାନୀୟ ଏସ୍. ପି. ସାରଙ୍ଗଧର ରାଉତ୍ରାଓ ଉପ-ଜିଲ୍ଲାପାଳ ମନ ମୋହନ ରଥ ଅନ୍ୟତମ ଅତିଥି ଭାବରେ ଯୋଗ ଦେଇଥିଲେ । ବଲାଙ୍ଗୀର କ୍ରୀଡ଼ା ଅଧିକାରୀ ସନାତନ ସାହୁ ବିବରଣୀ ପାଠ କରିଥିଲେ ।

ଏହି ନୌଶୁଳନା ପ୍ରତିଯୋଗିତାରେ ସୁବର୍ଣ୍ଣପୁର ବଲାଙ୍ଗୀର, ସୁନ୍ଦରଗଡ଼, ସମ୍ବଲପୁର ଏବଂ ଫୁଲବାଣୀ ଜିଲ୍ଲାର ଶତାଧିକ ପ୍ରତିଯୋଗୀ ଅଂଶ ଗ୍ରହଣ କରିଥିଲେ ଏବଂ ସୁବର୍ଣ୍ଣପୁର ଜିଲ୍ଲାର ପ୍ରତିଯୋଗୀମାନେ ପ୍ରଥମ ସ୍ଥାନ ଅଧିକାର କରିଥିଲେ ।

## ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିବାକୁ ଓଡ଼ିଶା ସରକାରଙ୍କ ଉଦ୍ୟମ

ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିବାକୁ ଓଡ଼ିଶା ସରକାର ରାଜ୍ୟର ବିଭିନ୍ନ ପର୍ଯ୍ୟଟନ କ୍ଷେତ୍ରରେ ଉନ୍ନୟନ କାର୍ଯ୍ୟ ଉପରେ ଗୁରୁତ୍ୱ ଦେଇଛନ୍ତି । ଓଡ଼ିଶା ସରକାରଙ୍କ ପର୍ଯ୍ୟଟନ ବିଭାଗ ଓ ଆଇ.ଟି.ଡି.ସି. ପକ୍ଷରୁ ଏଠାକାର ହୋଟେଲ୍ ଏସୋର ପୋର୍ଟ ଅଶୋକଠାରେ ଆୟୋଜିତ ଓଡ଼ିଶା ଉତ୍ସବକୁ ଉଦ୍‌ଘାଟନ କରି ପର୍ଯ୍ୟଟନ ବିଭାଗ ମନ୍ତ୍ରୀ ଶ୍ରୀ ଅନଙ୍ଗଉଦୟ ସିଂହଦେଓ ଏହା କହିଛନ୍ତି ।

ଗତ ୧୭ ତାରିଖରେ ମନ୍ତ୍ରୀ ଶ୍ରୀ ସିଂହଦେଓ ସାମ୍ବାଦିକମାନଙ୍କୁ କହିଛନ୍ତି ଯେ ଗତବର୍ଷ ଓଡ଼ିଶାକୁ ୧୩ ଲକ୍ଷ ପର୍ଯ୍ୟଟକ ଆସିଥିଲେ ଏବଂ ୩୫ ହଜାର ବିଦେଶୀ ପର୍ଯ୍ୟଟକଙ୍କ ମଧ୍ୟରୁ ଶତକଡ଼ା ୪୦ ଭାଗ ସୋଭିଏତ ୟୁନିୟନରୁ ଆସିଥିଲେ । ବିଦେଶୀ ପର୍ଯ୍ୟଟକଙ୍କ ସୁବିଧା ପାଇଁ ଭୁବନେଶ୍ୱର ବିମାନ ଘାଟି ଦେଇ ଆନ୍ତର୍ଜାତିକ ବିମାନ ଚଳାଚଳ କରିବାକୁ ବିଶେଷ ଉଦ୍ୟମ କରାଯାଇଛି ବୋଲି ସେ କହିଥିଲେ । ଏହି କାର୍ଯ୍ୟ ଦୁଇବର୍ଷ ମଧ୍ୟରେ ଶେଷ ହେବ। ଭିତିପ୍ରସ୍ତର ସ୍ଥାପନ ସରିଛି ଏବଂ ସରକାର ୭୮ ଏକର ଜମି ଏଥିପାଇଁ ହାତକୁ ନେଇଛନ୍ତି । ଏ କ୍ଷେତ୍ରରେ ଘରୋଇ ଉଦ୍ୟୋଗକୁ ପ୍ରାଧାନ୍ୟ ଦିଆଯିବ ବୋଲି ସେ କହିଥିଲେ ।

ପୁରୀ ଓ କୋଣାର୍କର ୯ କି.ମି. ବେଳାଭୂମିକୁ ସ୍ୱତନ୍ତ୍ର ପର୍ଯ୍ୟଟନ କ୍ଷେତ୍ର କରିବାକୁ କେନ୍ଦ୍ର ପରିବେଶ ମନ୍ତ୍ରଣାଳୟ ପକ୍ଷରୁ ୫/୬ ମାସ ମଧ୍ୟରେ କ୍ଲିୟରେନାସ୍ ସାଟିଫିକେଟ ମିଳିଯିବା ଆଶା କରାଯାଉଛି ବୋଲି ସେ କହିଥିଲେ । ଓଡ଼ିଶାରେ ବୌଦ୍ଧଧର୍ମର ବିକାଶ ଘଟିଥିବାରୁ, ରତ୍ନଗିରି, ଲଳିତଗିରି ଓ ଧଉଳି ଶାନ୍ତିସ୍ତୂପକୁ ବୌଦ୍ଧଧର୍ମାବଲମ୍ବୀ ଜାପାନୀ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିବା ପାଇଁ ଏକ ସ୍ୱତନ୍ତ୍ର ରେଳ ବ୍ୟବସ୍ଥା କରାଯିବ । ସେମାନେ ସାରନାଥ, ଗୟା ଓ ଓଡ଼ିଶାକୁ ସହଜରେ ଆସିପାରିବେ ।

ମହେନ୍ଦ୍ରଗିରି, ବାରଙ୍ଗବାଡ଼ି, ଫୁଲବାଣୀ ଓ କୋରାପୁଟରେ ନୂଆ ପର୍ଯ୍ୟଟନ କ୍ଷେତ୍ରଗୁଡ଼ିକର ବିକାଶ, ପାରାଦ୍ୱୀପ ଓ ଗୋପାଳପୁରରେ ଯାତ୍ରୀନିବାସ, ଧର୍ମଶାଳା ଇତ୍ୟାଦି ନିର୍ମାଣ ଏବଂ ଭିତରକନିକା ଓ ଶିମିଳିପାଳରେ ପର୍ଯ୍ୟଟନର ସୁବିଧା ଯୋଗାଇ ଦେବାକୁ ରାଜ୍ୟ ସରକାର କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି ବୋଲି ସେ ସାମ୍ବାଦିକମାନଙ୍କୁ କହିଥିଲେ । ବିଦେଶୀ ପର୍ଯ୍ୟଟକମାନଙ୍କୁ ସହଯୋଗ ସୁରକ୍ଷା ଦେବାରେ ପର୍ଯ୍ୟଟନ ବିଭାଗ ପଦକ୍ଷେପ ଗ୍ରହଣ କରିବ ବୋଲି ସେ କହିଥିଲେ । ଓ.ଟି.ଡ଼ି.ସି. ଆଞ୍ଚଳିକ ନିର୍ଦ୍ଦେଶକ ଶ୍ରୀ ଏସ୍.ଏମ୍. ଗନି, ଓଡ଼ିଶା ସରକାରଙ୍କ ପର୍ଯ୍ୟଟନ ନିର୍ଦ୍ଦେଶକ ଶ୍ରୀ ସୁରେଶ ଚନ୍ଦ୍ର ପଣ୍ଡା ଏହି ସଭାରେ ଅଂଶଗ୍ରହଣ କରିଥିଲେ ।

କୟନିକା ଓ ଉତ୍କଳିକା ପକ୍ଷରୁ ଓଡ଼ିଶାର ହସ୍ତଶିଳ୍ପ, ଶାଢ଼ୀ ଓ ବିଭିନ୍ନ କାରୁକାର୍ଯ୍ୟର ଜନିଷପତ୍ର ପ୍ରଦର୍ଶନ ଓ ବିକ୍ରୀ କରାଯାଇଥିଲା । ଦୁଇଦିନିଆ ଉତ୍ସବରେ ଓଡ଼ିଶୀ ନୃତ୍ୟ, ଦଣ୍ଡନୃତ୍ୟ ଇତ୍ୟାଦି ମନୋରଞ୍ଜନ କାର୍ଯ୍ୟକ୍ରମ ପରିବେଷଣ କରାଯାଇଥିଲା ।

## କଳିଙ୍ଗ କଳା ଉତ୍ସବ

ଗତ ୧୭ ତାରିଖ ସନ୍ଧ୍ୟାରେ ବ୍ରହ୍ମଗିରି ବ୍ଲକ ଅନ୍ତର୍ଗତ ପାରିକୁଦ ନୀଳକଣ୍ଠପୁର ଗ୍ରାମର ଚନ୍ଦ୍ରଶେଖର କଳାମନ୍ଦିର ସାଂସ୍କୃତିକ ଅନୁଷ୍ଠାନ ଆନୁକୂଲ୍ୟରେ କଳିଙ୍ଗକଳା ଉତ୍ସବର ପ୍ରଥମ ବାର୍ଷିକ ଉତ୍ସବକୁ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରି ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା କହିଲେ, ଚନ୍ଦ୍ରଶେଖର ପଟ୍ଟନାୟକ ଏ ଅଞ୍ଚଳର ଜଣେ ଅସାଧାରଣ ବ୍ୟକ୍ତିଥିଲେ। ଓଡ଼ିଶାର ସାଂସ୍କୃତିକ ବିକାଶ କ୍ଷେତ୍ରରେ ସେ ଜଣେ ମହାନ ବ୍ୟକ୍ତି । ତାଙ୍କର ଯୋଗ୍ୟ ଉତ୍ତରାଧିକାରୀ ଭାବେ ଗୁରୁ ଗଙ୍ଗାଧର



ଭୁବନେଶ୍ୱର ରେଳ ଷ୍ଟେସନ୍‌ଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ପତାକା ହଲାଇ କଟକଠାରୁ ପଲାସା ଯାଉଥିବା ନୂତନ ଡିଜେଲ୍ ଟ୍ରେନ୍‌ର ଶୁଭାରମ୍ଭ କରୁଛନ୍ତି ।



କଳାହାଣ୍ଡି ଜିଲ୍ଲା ବିଶ୍ୱନାଥପୁରସ୍ଥିତ ରାଜ୍ୟସ୍ତରୀୟ ମହିଳା ସମ୍ମିଳନୀର ଏକ ପ୍ରତିନିଧି ଦଳ ମୁଖ୍ୟମନ୍ତ୍ରୀଙ୍କୁ ତାଙ୍କ ପ୍ରକୋଷ୍ଠରେ ଭେଟି ଆଲୋଚନା କରୁଛନ୍ତି ।

## କେନ୍ଦ୍ରାପଡ଼ାରେ ମାର୍କେଟ କମ୍ପ୍ଲେକ୍ସ ଉଦ୍‌ଘାଟନ

କେନ୍ଦ୍ରାପଡ଼ା ପୁରୁଣା ବସ୍ ଷ୍ଟାଣ୍ଡରେ ୭୨ ଲକ୍ଷ ଟଙ୍କା ବ୍ୟୟରେ ମ୍ୟୁନିସିପାଲିଟି ପକ୍ଷରୁ ନିର୍ମିତ ମାର୍କେଟ କମ୍ପ୍ଲେକ୍ସ ଉଦ୍‌ଘାଟନ ଉତ୍ସବରେ ମୁଖ୍ୟ ବକ୍ତା ଭାବେ ଯୋଗଦେଇ ପୂର୍ତ୍ତ ଓ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ମହାନ୍ତି କହିଲେ ଯେ, କେନ୍ଦ୍ରାପଡ଼ା ଏକ ଜିଲ୍ଲାର ମାନ୍ୟତା ପାଇଥିବାରୁ ଏହାର ନାଳ ନର୍ଦ୍ଦମାର ଉନ୍ନତି ଓ ନିରକ୍ଷରତା ଦୂରୀକରଣ ପାଇଁ ଦୁଇକୋଟି ଟଙ୍କା ଦିଆଯାଇଛି । ସର୍ବ ପୁରାତନ ମ୍ୟୁନିସିପାଲିଟିର ମାଷ୍ଟରପ୍ଲାନ ପ୍ରସ୍ତୁତି ହୋଇ ନ ଥିବାରୁ ସେ କ୍ଷୋଭ ପ୍ରକାଶ କରିଥିଲେ । ମୁଖ୍ୟ ଅତିଥି ଅର୍ଥ ମନ୍ତ୍ରୀ ଶ୍ରୀ ବେଦ ପ୍ରକାଶ ଅଗ୍ରୱାଲା କହିଲେ ଯେ କେନ୍ଦ୍ରାପଡ଼ା ମ୍ୟୁନିସିପାଲିଟିର ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟ ସେ ହାତକୁ ନେଇଛନ୍ତି । ୭୨ କୋଟି ଟଙ୍କା ବ୍ୟୟରେ ଜଳଯୋଗାଣ ପ୍ରକଳ୍ପ, ଏକକୋଟି ଟଙ୍କା ବ୍ୟୟରେ ଗୋବରୀ ସେତୁ, ଆସନ୍ତା ରଥଯାତ୍ରା ପୂର୍ବରୁ ରଥ ଦାଣ୍ଡର ପିଚୁ କାର୍ଯ୍ୟ ସମ୍ପୂର୍ଣ୍ଣ କରିବା, ସେଥିମଧ୍ୟରୁ କେତୋଟି ମିନି ଷ୍ଟାଡ଼ିୟମ, କଲ୍ୟାଣ ମଣ୍ଡପ ନିର୍ମାଣ କାର୍ଯ୍ୟ ମଧ୍ୟ ହାତକୁ ନିଆଯାଇଛି । ସହରର ଆର୍ଥିକ ବିକାଶ ପାଇଁ ସେ ଜନସାଧାରଣଙ୍କ ସହଯୋଗ କାମନା କରିଥିଲେ । ପରିଷ୍କାର ପରିଚ୍ଛନ୍ନ ରଖିବାକୁ ସମ୍ମାନୀୟ ଅତିଥି ଉପଜିଲ୍ଲାପାଳ ଶ୍ରୀ ଗଙ୍ଗାଧର ରାଉତରାୟ ଜନସାଧାରଣଙ୍କ ସହଯୋଗ କାମନା କରିଥିଲେ । ଉତ୍ସବରେ ସଭାପତିତ୍ୱ କରି ପୌରପାଳ ଶ୍ରୀ ବିଜୟକୃଷ୍ଣ ସାହୁ କହିଲେ ଯେ କେନ୍ଦ୍ରାପଡ଼ା ମ୍ୟୁନିସିପାଲିଟିର ୪ ଖଣ୍ଡ ବସ୍ ଏହାର ଆର୍ଥିକ ଉନ୍ନତିରେ ସହାୟକ ହୋଇଛି । ପର ନିକଟରେ ନିହାତି ଦେଇ ମ୍ୟୁନିସିପାଲିଟି ସ୍ୱାବଲମ୍ବନଶୀଳ ହେବାକୁ ନାନାବିଧ ଉଦ୍ୟମ ହେଉଛି ଏ ଦିଗରେ. ସେ ଜନ ସାଧାରଣଙ୍କ ସହଯୋଗ କାମନା କରିଥିଲେ ।

## ଜଉଗଡ଼ ଦୁଗ୍ଧ ଉତ୍ପାଦନ ସମବାୟ ସମିତି ଉଦ୍‌ଘାଟିତ

ପୁରୁଷୋତ୍ତମପୁର, ନିକଟସ୍ଥ ପାଣ୍ଡିଆ ଗ୍ରାମରେ ନବଗଠିତ ଜଉଗଡ଼ ଦୁଗ୍ଧ ଉତ୍ପାଦନ ସମବାୟ ସମିତିଲିଃକୁ ଗତ ୧୮ ତାରିଖ ଦିନ ଗଞ୍ଜାମ ଜିଲ୍ଲାପାଳ ଦୀନନାଥ ପଣ୍ଡା ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଛନ୍ତି । ସ୍ଥାନୀୟ ବ୍ଲକ ଚେୟାରମେନ୍ ଦୁସନାଥ ପଣ୍ଡା, କୃଷ୍ଣପୁର ବିଧାୟକ ବିନାୟକ ମହାପାତ୍ରଙ୍କ ସମେତ ଓମେଫେଡ଼ ସାଧାରଣ ପରିଚାଳକ ଭେଟିନାରୀ ସର୍ଜନ ପ୍ରମୁଖ ଭାଷଣ ଦେଇ ଏହିଭଳି ସମବାୟ ସମିତିର ଆବଶ୍ୟକତା ବର୍ଣ୍ଣନା କରିଥିଲେ । ପି: କୃଷ୍ଣମୂର୍ତ୍ତିଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ସଭାରେ ସରପଞ୍ଚ ଗଣେଇ ଗଉଡ଼ ସ୍ୱାଗତ ଭାଷଣ ଓ ସମିତିସଭ୍ୟ ନାରାୟଣ ରାଓ ଧନ୍ୟବାଦ ଅର୍ପଣ କରିଥିଲେ । ଜିଲ୍ଲାପାଳ ଶ୍ରୀ ପଣ୍ଡା ତାଙ୍କ ଭାଷଣରେ ସମବାୟ ସମିତିଗୁଡ଼ିକୁ ଦୃଢ଼ ଓ ଶକ୍ତିଶାଳୀ କରି ଗଢ଼ି ତୋଳିବାରେ ସମସ୍ତେ ସହଯୋଗ କରିବା ଉଚିତ ବୋଲି କହିଥିଲେ । ସାକ୍ଷର ପରବର୍ତ୍ତୀ କାର୍ଯ୍ୟକ୍ରମରେ ଜନସାଧାରଣ ସାମିଲ ହେବା ପାଇଁ ଓ ଗଞ୍ଜାମକୁ ସମ୍ପୂର୍ଣ୍ଣ ସାକ୍ଷର କରିବାରେ ସମସ୍ତେ ସହଯୋଗ କରିବା ପାଇଁ ସେ ନିବେଦନ କରିଥିଲେ । ଏହା ପରେ ସେ ଐତିହାସିକ ଜଉଗଡ଼ ଓ ଯନ୍ତ୍ରଣ ପାଠାଗାର ପରିଦର୍ଶନ କରିଥିଲେ ।

## ଜ୍ଞାନ ପଟ୍ଟନାୟକଙ୍କ ନାମରେ ବିଦ୍ୟାଳୟ ସ୍ଥାପନ ପାଇଁ ନିଷ୍ପତ୍ତି

ଖଣ୍ଡଗିରିଠାରେ ଏକ ଉଚ୍ଚବାଳିକା ବିଦ୍ୟାଳୟ ସ୍ଥାପନ କରିବା ପାଇଁ ଏଠାରେ ଗତ ୧୯ ତାରିଖ ଦିନ ଏକ ସାଧାରଣ ବୈଠକ ଅନୁଷ୍ଠିତ ହୋଇଥିଲା । ଏହି ବୈଠକରେ ପଶ୍ଚିମ ଭୁବନେଶ୍ୱରର ପୋଖରୀପୁଟ, ଗଣ୍ଡମୁଣ୍ଡା, ଜାଗମରା, ବାରାବାରି, ଖଣ୍ଡଗିରି, ଆଇଗିଣିଆ, ଦୁମୁଦୁମା, ଦୁମୁଦୁମା, ହାଉସିଂବୋର୍ଡ଼ କୋଇଥିଆ, ରଘୁନାଥନଗର, ବରମୁଣ୍ଡା, ପାଟିକିଆ, ନୂଆଗାଁ ଭଗତପୁର ଓ ଜାଗମରା ହାଉସିଂ ବୋର୍ଡ଼ ପ୍ରଭୃତି ଅଞ୍ଚଳରୁ ବହୁବ୍ୟକ୍ତି ଏ ବୈଠକରେ ଯୋଗ ଦେଇଥିଲେ ଏବଂ ଖଣ୍ଡଗିରିଠାରେ ଏକ ଉଚ୍ଚବାଳିକା ବିଦ୍ୟାଳୟ ପ୍ରତିଷ୍ଠା କରାଯିବାର ଆବଶ୍ୟକତା ରହିଛି ବୋଲି ଉପସ୍ଥିତ ବ୍ୟକ୍ତିମାନେ ଅନୁଭବ କରିଥିଲେ ।

ଏହି ବୈଠକରେ ଅଧ୍ୟକ୍ଷତା କରିଥିଲେ ପ୍ରସନ୍ନ ପଟ୍ଟନାୟକ । ସୁବାସ ସାହୁ ଧନ୍ୟବାଦ ଦେଇଥିଲେ । ଏହି ବିଦ୍ୟାଳୟଟିକୁ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ସହଧର୍ମିଣୀ ଶ୍ରୀମତୀ ଜ୍ଞାନ ପଟ୍ଟନାୟକ ନାମରେ ନାମିତ କରିବା ପାଇଁ ବୈଠକରେ ସର୍ବସମ୍ମତିକ୍ରମେ ସ୍ଥିର କରାଯାଇଥିଲା ଏବଂ ଏହା ୧୯୯୩-୯୪ ବର୍ଷଠାରୁ କାର୍ଯ୍ୟକାରୀ କରିବ ବୋଲି ନିଷ୍ପତ୍ତି ନିଆଯାଇଥିଲା । ବିଧାୟକ ଅଶୋକ ଦାସଙ୍କ ସମେତ ବୈଠକରେ ପ୍ରକାଶ ପାଣି, ଅଶୋକ ମହାପାତ୍ର, ଅବନି ପାତ୍ର, ବାସୁଦେବ ଜେନା, ସଞ୍ଜୟ ମହାନ୍ତି, ବିଷ୍ଣୁପଦ ମାଝି, ରାମଚନ୍ଦ୍ର ରଣସିଂହ, ପର୍ଶୁରାମ ପାଣି, ଉଲ୍ଲାସ ସ୍ୱାଇଁ, ପ୍ରତାପଚନ୍ଦ୍ର ଦାସ, ଅମ୍ବିକା ପ୍ରସାଦ ପଟ୍ଟନାୟକ, ଅନୁପମା ମହାନ୍ତି, ସୁପ୍ରିୟା ମହାନ୍ତି, ଶତ୍ରୁଘ୍ନ ରଣବିଜୁଳି, ରାଧାକାନ୍ତ ସାମଲ ପ୍ରମୁଖ ବହୁ ବ୍ୟକ୍ତି ଉପସ୍ଥିତ ଥିଲେ । ଏହି ଅବସରରେ ବିଦ୍ୟାଳୟର ପରିଚାଳନା କମିଟିର ସଭାପତିଭାବେ ବିଧାୟକ ଅଶୋକ ଦାସଙ୍କୁ ମନୋନୀତ କରାଯାଇଥିଲା ।



OGP-MP-PTS (I&PR) 2-6,000-17-5-1993